

# ଭାରତ ପଥିକ
# ରାମମୋହନ ରାୟ

ପ୍ରକାଶକ : ଶ୍ରୀ ମନୋଜକୁମାର ମହାପାତ୍ର
**ଗ୍ରନ୍ଥମନ୍ଦିର**, ବିନୋଦବିହାରୀ, କଟକ-୨

ମୁଦ୍ରକ : ଶ୍ରୀ ଜଗନ୍ନାଥ ପ୍ରେସ୍
ବାଙ୍କିସାହି, କଟକ-୯

ପ୍ରଥମ ମୁଦ୍ରଣ : ୧୯୮୦
ପୁନର୍ମୁଦ୍ରଣ : ୧୯୮୬
ପୁନର୍ମୁଦ୍ରଣ : ୧୯୯୧

ମୂଲ୍ୟ : ଟ ୮-୦୦

# ରାଜା ରାମମୋହନ ରାୟ

## ପୃଷ୍ଠଭୂମି

ଆଜଠାରୁ ଅଢ଼େଇଶହ ବର୍ଷ ପୂର୍ବର କଥା । ଭାରତ ସାରା ଏକ ଘୋର ଅରାଜକତା ଓ ଅନ୍ଧକାରର ଯୁଗ ବ୍ୟାପିଯାଇଥାଏ । ଦିଲ୍ଲୀର ମୋଗଲ 'ବାଦଶାହ' ନାମକୁ ମାତ୍ର 'ଭାରତ-ସମ୍ରାଟ୍', ତାଙ୍କର ଦୁର୍ବଳତା ଓ ଅସହାୟତାର ସୁଯୋଗ ନେଇ ବିଭିନ୍ନ ମୋଗଲପ୍ରଦେଶର ଶାସନକର୍ତ୍ତା 'ନବାବମାନେ' ନିଜନିଜ ଅଞ୍ଚଳରେ ମନୋମୁଖୀ ଶାସନ ଚଳାଇଥାଆନ୍ତି । ଛତ୍ରପତି ଶିବାଜୀଙ୍କ ପ୍ରତିଷ୍ଠିତ ମରହଟ୍ଟା ରାଜ୍ୟ ଉପଯୁକ୍ତ ନେତୃତ୍ୱ ଅଭାବରୁ ଖଣ୍ଡ ଖଣ୍ଡ ହୋଇଯାଇଥାଏ ଏବଂ ମରହଟ୍ଟା ପୁଣ୍ଡକ ବା 'ବାର୍ଗୀର'ମାନେ ରାଜସ୍ୱ ବା 'ଚୌଥ' ଅସୁଲ ନାଁରେ ନିଜ ରାଜ୍ୟ ତଥା ପଡ଼ୋଶୀ ରାଜ୍ୟର ନିରୀହ ଗ୍ରାମବାସୀଙ୍କ ଉପରେ ଅକଥ୍ୟ ଅତ୍ୟାଚାର ଚଳାଇ ସେମାନଙ୍କର ସର୍ବସ୍ୱ ଲୁଣ୍ଠନ କରୁଥାଆନ୍ତି । ଓଲନ୍ଦାଜ ଆଉ ଦିଗ୍ମାରର ଜଳଦସ୍ୟୁମାନେ ବି ଏଇ ସୁଯୋଗରେ ନିଜ ନିଜ ନୌ-ବଳ ଘେନି ସମୁଦ୍ର ବା ବଡ଼ ବଡ଼ ନଈମୁହାଣରେ ଥିବା, ଗ୍ରାମଗୁଡ଼ିକରେ ମନଇଚ୍ଛା ଲୁଟତରାଜ ଚଳାଇଥାଆନ୍ତି । ଏଇ ଅବସରରେ ଉପରବର୍ଣ୍ଣିତ ପରିସ୍ଥିତିର ସୁଯୋଗ ନେଇ ସୁଚତୁର୍ ଇଷ୍ଟଇଣ୍ଡିଆ କମ୍ପାନୀ ଧୀରେ ଧୀରେ ଭାରତରେ ନିଜ ରାଜ୍ୟ ବିସ୍ତାର କରୁଥିଲେ । ସେମାନେ ପ୍ରଚାର କରୁଥିଲେ—ଏ ଦେଶବାସୀଙ୍କ ମଙ୍ଗଳ ସେମାନଙ୍କର କାମ୍ୟ । ମାତ୍ର ନିଜ ସ୍ୱାର୍ଥ ଉପରେ ସେମାନଙ୍କର ଦୃଷ୍ଟି ଲାଗିରହିଥାଏ ।

ଏପରି ଏକ ଅନିଶ୍ଚିତ ରାଜନୈତିକ ଆଉ ସାମାଜିକ ପରିସ୍ଥିତିରେ ଦେଶରୁ ଶିକ୍ଷା ଓ ସଂସ୍କୃତି ଏକପ୍ରକାର ଲୋପପାଇଯାଇଥାଏ । ଘରଆଡ଼େ କୁସଂସ୍କାର ଆଉ ଔଦ୍ଧତ୍ୟର ପ୍ରାଦୁର୍ଭାବ । ପ୍ରତ୍ୟହ ସତୀଦାହ ଓ ପ୍ରତି ଅମାବାସ୍ୟାରେ ବିଭିନ୍ନ କାଳୀମନ୍ଦିରରେ ନରବଳି ସେ ସମୟର ନିତାନ୍ତ ମାମୁଲି ଘଟଣା । ତ' ଛଡ଼ା ଅରାଜକତା ଯୋଗୁଁ ଚୋର ଡକାୟତଙ୍କ ଦୌରାତ୍ମ୍ୟ ଅବର୍ଣ୍ଣନୀୟ । ଏମାନଙ୍କ ଯୋଗୁଁ ଦିନ ଦିପହରରେ ସୁଦ୍ଧା ଲୋକେ ଏକାକୀ ଗାଁ ବାହାରକୁ ଯିବାଲାଗି ଭୟ କରୁଥିଲେ । କିପରି ନିଜ ପ୍ରାଣଟା ବଞ୍ଚିରହିବ—ଏହାହିଁ ଥିଲା ସେ ସମୟର ଅଧିକାଂଶ ଲୋକଙ୍କର ପ୍ରଧାନ ସମସ୍ୟା । ଏଇ ଅବସ୍ଥାରେ ଶିକ୍ଷା ବା ସଂସ୍କୃତି ପ୍ରଭୃତି ବିଷୟରର ସ୍ଥାନ କେଉଁଠି ?

ସେହି ସମୟରେ ସମାଜର ହର୍ତ୍ତାକର୍ତ୍ତା ବୋଲିଉଥିବା କେତେକ ଜମିଦାର ଓ ଧର୍ମଗୁରୁ ନିଜର ଖୁସି ମୁତାବକ ନାନା ପ୍ରକାର ବୀଭତ୍ସ ପ୍ରଥାକୁ ଉତ୍ସାହିତ କରୁଥିଲେ । ଐତିହାସିକମାନେ କହନ୍ତି ଯେ, ବହୁ ଜମିଦାରଙ୍କ ଉଦ୍ୟୋଗରେ ନରବଳିମାନ ଦିଆଯାଉଥିଲା ଏବଂ କେତେକ ଧର୍ମବ୍ୟକ୍ତି ଅଧିକା ଉପାର୍ଜନ ଲୋଭରେ ଡକାୟତଦଳଙ୍କ ପୃଷ୍ଠପୋଷକତା ବି କରୁଥିଲେ । ନାନାପ୍ରକାର ଭ୍ରଷ୍ଟାଗୃହରେ ମଦ୍ୟ ରହି ବାଈ ନାଚ, ମେଣ୍ଢାଲଢ଼ାଇ ଓ ଜୁଆଖେଳରେ ଅବସର ସମୟ କଟାଉଥିବା ତଥାକଥିତ ଶିକ୍ଷିତ ଓ ସଂଗତିସମ୍ପନ୍ନ ଲୋକେ ପ୍ରାଚୀନ ଭାରତର ମହାନ୍ ଐତିହ୍ୟ- ବେଦବେଦାନ୍ତର ବାଣୀ ପୂରାପୂରି ପାସୋରି ପକାଇଥିଲେ । ସେ ସମୟରେ ଆମ ଦେଶର ଅବସ୍ଥା ଥିଲା ଝଡ଼ ରାତିରେ ମଝି ଦରିଆରେ ମଙ୍ଗୁଆଳ ନଥିବା ବିପନ୍ନ ଡଙ୍ଗାଟିଏ ପରି ।

୨

# ବଂଶ ପରିଚୟ

ଭାରତର ଏହିପରି ଘୋର ଦୁର୍ଯୋଗ ସମୟରେ ୧୭୭୨ ମସିହାରେ ବଙ୍ଗ ଦେଶର ହୁଗୁଳି ଜିଲ୍ଲାର ରାଧାନଗର ଗ୍ରାମରେ ଏକ କୁଳୀନ ବ୍ରାହ୍ମଣ ପରିବାରରେ ରାମମୋହନ ରାୟ ଜନ୍ମଗ୍ରହଣ କରିଥିଲେ । ରାମମୋହନଙ୍କ ପ୍ରପିତାମହ କୃଷ୍ଣଚରଣ ମୁଖୋପାଧ୍ୟାୟ ସମ୍ରାଟ୍ ଔରଙ୍ଗଜେବଙ୍କ ସମୟରେ 'ନବାବ ସରକାର' ରୂପେ ମୁର୍ଶିଦାବାଦଠାରେ କାର୍ଯ୍ୟ କରୁଥିଲେ । ତାଙ୍କର ସତ୍ୟବାଦିତା ଓ ଦକ୍ଷତାରେ ସନ୍ତୁଷ୍ଟ ହୋଇ ମୁର୍ଶିଦାବାଦର ନବାବ ତାଙ୍କୁ 'ରାୟ' ଉପାଧି ଦେଇଥିଲେ । ସେହିଦିନଠାରୁ ବଂଶାନୁକ୍ରମେ ସେମାନେ 'ରାୟ' ପଦ ବ୍ୟବହାର କରିଆସୁଛନ୍ତି ।

କୃଷ୍ଣଚରଣ ବଡ଼ ଗୁଣବାନ୍ ଓ ଧାର୍ମିକ ବ୍ୟକ୍ତି ଥିଲେ । ବହୁ ସାଧୁସନ୍ଥଙ୍କ ସଙ୍ଗେ ତାଙ୍କର ଘନିଷ୍ଠତା ଥିଲା ଏବଂ ସେମାନଙ୍କଠାରୁ ସେ ଧର୍ମର ନାନା ଗୂଢ଼ତତ୍ତ୍ୱ ଶିକ୍ଷା କରିଥିଲେ । କୃଷ୍ଣଚରଣଙ୍କର ତିନିପୁତ୍ର—ହରିପ୍ରସାଦ, ଅମରଚନ୍ଦ୍ର ଓ ବ୍ରଜବିନୋଦ । ବ୍ରଜବିନୋଦ ଖୁବ୍ ଧନବାନ୍ ଥିଲେ । ସମାଜକଲ୍ୟାଣ ଓ ଧର୍ମାନୁରାଗ ସକାଶେ ସେ ଦେଶବାସୀଙ୍କର ବିଶେଷ ପ୍ରଶଂସାଭାଜନ ହୋଇଥିଲେ । ବ୍ରଜ-ବିନୋଦ ମୁର୍ଶିଦାବାଦର ନବାବ ସିରାଜ ଉଦ୍ଦୌଲଙ୍କ ଅଧୀନରେ ରାଜସ୍ୱ ବିଭାଗରେ କାର୍ଯ୍ୟ କରୁଥିଲେ; ମାତ୍ର କର୍ତ୍ତୃପକ୍ଷଙ୍କଠାରୁ ଉପଯୁକ୍ତ ସଦ୍‌ବ୍ୟବହାର ନପାଇବା ଯୋଗୁଁ କାର୍ଯ୍ୟରୁ ଇସ୍ତଫା ଦେଇ ଜୀବନର ଶେଷାଂଶ ନିଜ ଗ୍ରାମରେ କଟାଇଥିଲେ ।

ବ୍ରଜବିନୋଦ ବଡ଼ ଧର୍ମାନୁରାଗୀ ଥିବାରୁ, ନିଜର ଅନ୍ତିମ ସମୟ ନିକଟ ହେଲାଣି ବୋଲି ଅନୁଭବ କରିବା ମାତ୍ରେ ଗ୍ରାମ ଛାଡ଼ି ଗଙ୍ଗା-

କୂଳରେ ଏକ କୁଡ଼ିଆ ତୋଳି ତହିଁରେ ଆଶ୍ରୟ ନେଲେ । ଏହିଠାରେ ଶ୍ରୀରାମପୁରନିବାସୀ ଶ୍ୟାମ ଭଟ୍ଟାଚାର୍ଯ୍ୟ ନିଜ କନ୍ୟା ସହିତ ବ୍ରଜବିନୋଦଙ୍କର କୌଣସି ପୁତ୍ରକୁ ବିବାହ କରାଇବା ଲାଗି ବିଶେଷ ଅନୁରୋଧ କଲେ । ବ୍ରଜବିନୋଦ ବୈଷ୍ଣବ ଏବଂ ଶ୍ୟାମ ଶାକ୍ତ । ସେ ସମୟରେ ଏହି ଦୁଇ ସଂପ୍ରଦାୟ ମଧ୍ୟରେ ତୀବ୍ର ବିଦ୍ୱେଷ ଓ ଅସଦ୍‌ଭାବ ରହିଥିଲା । ତଥାପି ଉଦାରଚେତା ବ୍ରଜବିନୋଦ କନ୍ୟାଦାୟଗ୍ରସ୍ତ ପିତାର ଏହି ଅନୁନୟକୁ ଅବଜ୍ଞା କରି ପାରିଲେ ନାହିଁ । ତେଣୁ ନିଜର ସାତ ପୁତ୍ରଙ୍କୁ ଜଣ ଜଣ କରି ଡାକି ସେମାନଙ୍କ ମଧ୍ୟରୁ କିଏ ସେହି ଶାକ୍ତ ପରିବାରର କନ୍ୟାକୁ ବିବାହ କରିବାଲାଗି ପ୍ରସ୍ତୁତ ବୋଲି ପଚାରିଲେ । କନିଷ୍ଠ ରାମକାନ୍ତଙ୍କ ବ୍ୟତୀତ ଆଉ କୌଣସି ପୁତ୍ର ଶ୍ୟାମ ଭଟ୍ଟାଚାର୍ଯ୍ୟଙ୍କ କନ୍ୟାକୁ ବିବାହ କରିବା ସକାଶେ ରାଜି ହେଲେ ନାହିଁ । ଫଳରେ ବୈଷ୍ଣବ ରାମକାନ୍ତଙ୍କ ସହିତ ଶାକ୍ତକନ୍ୟା ତାରିଣୀ ଦେବୀଙ୍କର ଶୁଭ ବିବାହ ସମ୍ପନ୍ନ ହେଲା । ଏହି ବିବାହ ଫଳରେ ରାମକାନ୍ତଙ୍କର ଦୁଇ ପୁତ୍ର ଓ ଗୋଟିଏ କନ୍ୟା ଜନ୍ମିଥିଲେ । କନ୍ୟାଟି ଜ୍ୟେଷ୍ଠା; ମାତ୍ର ତାଙ୍କର ନାମ ଏଯାଏଁ ଅଜ୍ଞାତ ରହିଯାଇଛି । ଦୁଇ ପୁତ୍ରଙ୍କ ମଧ୍ୟରେ ଜ୍ୟେଷ୍ଠ ଜଗନ୍ମୋହନ ଓ କନିଷ୍ଠ 'ରାମମୋହନ' ।

ତାରିଣୀ ଦେବୀଙ୍କୁ ଲୋକେ ଶ୍ରଦ୍ଧାରେ 'ଫୁଲଠାକୁରାଣୀ' ବୋଲି ଡାକୁଥିଲେ । ସେ ଅତି ବୁଦ୍ଧିମତୀ, ତେଜସ୍ୱିନୀ ଓ ଧର୍ମପରାୟଣା ମହିଳା ଥିଲେ । ମାତାଙ୍କର ଏଇ ଦୁର୍ଲଭ ଗୁଣଗୁଡ଼ିକ ରାମମୋହନଙ୍କ ପରବର୍ତ୍ତୀ ଜୀବନରେ ବିଶେଷଭାବରେ ପ୍ରତିଫଳିତ ହୋଇଥିଲା । ମାତାଙ୍କ ପରି ରାମମୋହନ ନିଜର ସୁଚିନ୍ତିତ ସିଦ୍ଧାନ୍ତରୁ କଦାପି କୌଣସି ଚାପ, ପ୍ରଲୋଭନ ବା ଭୟରେ ବିଚ୍ୟୁତ ହୋଇନଥିଲେ ।

ପିତା ରାମକାନ୍ତଙ୍କ ଚରିତ୍ରରେ ମଧ୍ୟ ସାଧୁତା, ଦକ୍ଷତା ଓ ତେଜସ୍ୱିତାର ଅଭାବ ନଥିଲା । ପ୍ରଥମ ଜୀବନରେ ସେ ପାରମ୍ପରିକତା ରକ୍ଷାକରି ନବାବ ସିରାଜ ଉଦ୍ଦୌଲ୍ଲାଙ୍କ ଅଧୀନରେ କାର୍ଯ୍ୟ ଗ୍ରହଣ କରିଥିଲେ । ମାତ୍ର ନବାବଙ୍କ ଅସୌଜନ୍ୟ ବ୍ୟବହାରରେ କ୍ଷୁବ୍ଧ ହୋଇ ଚାକିରି ପରିତ୍ୟାଗ କରି ବର୍ଦ୍ଧମାନର ମହାରାଜାଙ୍କଠାରୁ କେତେଖଣ୍ଡ ଗ୍ରାମ ଇଜାରା ରୂପେ ଗ୍ରହଣ କଲେ । କେତେକ ବର୍ଷ ପରେ ଏହି 'ଇଜାରା' ସଂକ୍ରାନ୍ତ କୌଣସି କୌଣସି ବିଷୟ ନେଇ ମହାରାଜାଙ୍କ ସହିତ ମତଭେଦ ଘଟି ବିବାଦର ସୂତ୍ରପାତ ହେବାରୁ, ରାମକାନ୍ତ ବିନା ଦ୍ୱିଧାରେ ସମସ୍ତ ଗ୍ରାମ ଫେରାଇଦେଲେ ଏବଂ ସବୁପ୍ରକାର ବିଷୟ କର୍ମରୁ ଅବ୍ୟାହତି ନେଇ ନିଜ ଗ୍ରାମର ଏକ ନିର୍ଜନ ସ୍ଥାନରେ ଇଷ୍ଟଦେବତାଙ୍କ ନାମ ଧ୍ୟାନକରି ଜୀବନର ଅବଶିଷ୍ଟ ସମୟ କଟାଇଲେ ।

କଥାରେ ଅଛି ବାପ ଭଲ ପୁଅ । ରାମକାନ୍ତ ଓ ତାରିଣୀଙ୍କର ଚରିତ୍ରବଳ ଏବଂ ନାନା ସଦ୍‌ଗୁଣ ଯେ ରାମମୋହନଙ୍କ ଜୀବନକୁ ଅନେକାଂଶରେ ପ୍ରଭାବିତ କରିଥିଲା, ଏହା ଅତି ସ୍ୱାଭାବିକ ।

## ତୁଳସୀ ଦୁଇପତ୍ରରୁ ବାସେ

ରାମକାନ୍ତ ରାୟ ଆପେ ଥିଲେ ଶିକ୍ଷିତ ଓ ସେଇ ସଙ୍ଗେ ସଙ୍ଗେ ଶିକ୍ଷାନୁରାଗୀ । ପ୍ରଚଳିତ ରୀତି ଅନୁସାରେ ପାଞ୍ଚବର୍ଷ ବୟସରେ ରାମମୋହନ ଗ୍ରାମ୍ୟ ପାଠଶାଳାରେ ବିଦ୍ୟାରମ୍ଭ କରିଥିଲେ । ସେଇଠାରେ ସୁନ୍ଦର ତୀକ୍ଷ୍ଣ ବୁଦ୍ଧି ଓ ଅସାଧାରଣ ସ୍ମୃତିଶକ୍ତିର

ପରିଚୟ ପାଇ ରାମକାନ୍ତ ତାଙ୍କୁ ଯଥାସମ୍ଭବ ଉଚ୍ଚ ଶିକ୍ଷା ଦେବାଲାଗି ତତ୍ପର ହେଲେ ।

ସେଇ ମୋଗଲ-ଯୁଗରେ ରାଜଭାଷା 'ଫାର୍ସୀ' ଓ ସେ ସଙ୍ଗେ ସଙ୍ଗେ 'ଆରବୀ' ଭାଷାର ବିଶେଷ ଆଦର ଥିଲା । ନଅବର୍ଷ ବୟସରେ ଫାର୍ସୀ ଓ ଆରବୀରେ ଦକ୍ଷତା ଅର୍ଜନ ଲାଗି ରାମକାନ୍ତ ରାମମୋହନଙ୍କୁ ପାଟନା ପଠାଇଦେଲେ । ସେଠାରେ ମାତ୍ର ତିନି ବର୍ଷ ରହି ରାମମୋହନ କଠିନ ଆରବୀ ଭାଷାକୁ ସଂପୂର୍ଣ୍ଣ ଆୟତ୍ତ କରି ଏହି ଭାଷାରେ ଅନୂଦିତ ଇଉକ୍ଲିଡ୍ (Euclid)ଙ୍କ ଜ୍ୟାମିତି ଓ ଆରିଷ୍ଟଟଲଙ୍କ ତର୍କଶାସ୍ତ୍ର ଅଧ୍ୟୟନ କରିଥିଲେ । ସେଇ ଗ୍ରନ୍ଥଗୁଡ଼ିକ ଅଧ୍ୟୟନ କରି ସେଇ କିଶୋର ବୟସରୁହିଁ ସେ ଅସାଧାରଣ ଚିନ୍ତାଶକ୍ତି ଓ ତର୍କନୈପୁଣ୍ୟ ଅର୍ଜନ କରିଥିଲେ । ମୁସଲମାନମାନଙ୍କ ଧର୍ମ-ଗ୍ରନ୍ଥ 'କୋରାନ୍' ଆରବୀ ଭାଷାରେ ଲିଖିତ । ପାଟନା ରହଣି ସମୟରେ ବାଳକ ରାମମୋହନ ଆରବୀ ଶିଖି କେବଳ ସେ ମୂଳ କୋରାନ୍ ଆଦ୍ୟ ପ୍ରାନ୍ତ ଅଧ୍ୟୟନ କରିଥିଲେ ତାହା ନୁହେଁ, ତହିଁରେ ବର୍ଣ୍ଣିତ ବିଭିନ୍ନ ଜଟିଳ ଓ ସୂକ୍ଷ୍ମତତ୍ତ୍ୱ ନେଇ ଅନେକ ସମୟରେ ସେ ସ୍ଥାନୀୟ ପ୍ରବୀଣ ମୌଲବିମାନଙ୍କ ସଙ୍ଗେ ତର୍କ ବି କରୁଥିଲେ ।

ବାରବର୍ଷ ବୟସରେ ଆରବୀ ଅଧ୍ୟୟନ ଅନ୍ତେ ଗ୍ରାମକୁ ଫେରିବା ପରେ ସଂସ୍କୃତ ଶିକ୍ଷା ଲାଗି ରାମମୋହନଙ୍କ ପିତା ତାଙ୍କୁ କାଶୀଧାମକୁ ପଠାଇଦେଲେ । ମାତ୍ର ଚାରିବର୍ଷ ମଧ୍ୟରେ ସଂସ୍କୃତ ଭାଷାରେ ଉଲ୍ଲେଖଯୋଗ୍ୟ ବ୍ୟୁତ୍ପତ୍ତି ଅର୍ଜନ କରି ରାମମୋହନ ଷୋହଳ ବର୍ଷ ବୟସରେ ନିଜ ଗ୍ରାମକୁ ଫେରିଆସିଲେ ।

ପାଟନାରେ ଥାଇ କୋରାନ୍ ଅଧ୍ୟୟନ କରି ରାମମୋହନଙ୍କ ମନ ଏକେଶ୍ୱରବାଦ ପ୍ରତି ବିଶେଷ ଆକୃଷ୍ଟ ହୋଇଥିଲା । ପୁଣି

କାଶୀଧାମରେ ହିନ୍ଦୁ ଧର୍ମର ପ୍ରଧାନ ଶାସ୍ତ୍ର ବେଦାନ୍ତ ଓ ଉପନିଷଦ୍ ପଢ଼ିବା ସମୟରେ ତାଙ୍କର ଏଇ ମନୋଭାବ ଦୃଢ଼ତର ହେଲା । ଶେଷରେ ନିଜ ମନୋଭାବକୁ ଗୋପନ କରିନପାରି 'ହିନ୍ଦୁମାନଙ୍କ ପୌତ୍ତଳିକ ଧର୍ମପ୍ରଣାଳୀ' ନାମରେ ଏକ ପୁସ୍ତକ ପ୍ରଣୟନ କରି ସେ ସାକାର ଉପାସନାର ତୀବ୍ର ବିରୋଧିତା କରିଥିଲେ । ରାମକାନ୍ତ ଏବଂ ତାରିଣୀ ଉଭୟଙ୍କର ସ୍ୱଧର୍ମରେ ବିଶେଷ ନିଷ୍ଠା ଥିଲା । ତେଣୁ ପୁତ୍ରର ଏପରି ମନୋଭାବ ସେମାନଙ୍କ ଚକ୍ଷୁରେ ବଡ଼ ଦୁଃଖଦାୟକ ହେବାରୁ, ସ୍ୱାମୀ ସ୍ତ୍ରୀ ଦୁହେଁ ଏକମତ ହୋଇ ରାମମୋହନଙ୍କୁ ପୈତୃକ ଗୃହରୁ ବିତାଡ଼ିତ କଲେ । ସେମାନେ ଭାବିଥିଲେ ଯେ ଏପରି କଠୋର ପନ୍ଥା ଗ୍ରହଣ କଲେ ଉଦ୍ଧତ ବାଳକ ଅବଶ୍ୟ ନିଜର ଉଦ୍ଭଟ ମତବାଦ ପରିତ୍ୟାଗ କରିବ; ମାତ୍ର ସେହି ଭାବନା ଭାବନାରେହିଁ ରହିଗଲା । ସ୍ୱାଧୀନଚେତା ରାମମୋହନ ନିଃସଙ୍କୋଚରେ ନିଜ ପୈତୃକ ଗୃହ ଛାଡ଼ି ନିରୁଦ୍ଦିଷ୍ଟ ଯାତ୍ରାରେ ବାହାରିପଡ଼ିଲେ ।

## ତିବ୍ବତରେ

ପୈତୃକ ଗୃହ ଛାଡ଼ିବାର ଅଳ୍ପଦିନ ପରେ ଜଣେ ତେଜସ୍ୱୀ ସନ୍ନ୍ୟାସୀଙ୍କ ସହିତ ରାମମୋହନଙ୍କର ସାକ୍ଷାତ ହୋଇଥିଲା । କେତେକ ଜୀବନୀକାର କହନ୍ତି ଯେ ଏହି ସନ୍ନ୍ୟାସୀଙ୍କ ପରାମର୍ଶରେ ରାମମୋହନ ଭାରତ ପରିତ୍ୟାଗ କରି ତିବ୍ବତ ଯାତ୍ରା କରିଥିଲେ । ପୁଣି ଅନ୍ୟ କେତେକଙ୍କ ମତରେ ଧର୍ମପିପାସୁ ରାମମୋହନଙ୍କର ତିବ୍ବତଯାତ୍ରାର ଉଦ୍ଦେଶ୍ୟ ଥିଲା ବୌଦ୍ଧଧର୍ମ ସମ୍ବନ୍ଧରେ ବିଶେଷ ଜ୍ଞାନ ଅର୍ଜନ କରିବା । ସେ ଯାହାହେଉ ଏ କଥା ସୁନିଶ୍ଚିତ ଯେ

ମାତ୍ର ଷୋହଳ ବର୍ଷ ବୟସରେ ରାମମୋହନ ତିବ୍ବତ ପରି ଏକ ଅଜଣା ଓ ଦୁର୍ଗମ ଦେଶକୁ ଯାତ୍ରାକରିଥିଲେ ।

ସେ ଯୁଗରେ ରେଳ ବା ମଟର ତ ଦୂରର କଥା, ଭଲ ସଡ଼କ ସୁଦ୍ଧା ନଥିଲା କହିଲେ ଚଳେ । ବାଟସାରା ପଦେ ପଦେ ହିଂସ୍ରଜନ୍ତୁ ଓ ଚୋର ଡକାୟତଙ୍କର ଭୟ । ପୁଣି ହିମାଳୟ ପରି ଦୁର୍ଲଙ୍ଘ୍ୟ ପର୍ବତର ଆରପଟେ ତିବ୍ବତର ଅବସ୍ଥିତି । ସର୍ବୋପରି ସେ ଯୁଗର ତିବ୍ବତୀୟମାନେ ବିଦେଶୀମାନଙ୍କୁ, ବିଶେଷରେ ଅଣ-ବୌଦ୍ଧମାନଙ୍କୁ ବଡ଼ ସନ୍ଦେହ ଓ ଦ୍ୱେଷ ଦୃଷ୍ଟିରେ ଦେଖୁଥିଲେ । ବିନା ଅନୁମତିରେ ତିବ୍ବତରେ ପଶିବା ବିଦେଶୀମାନଙ୍କ ପକ୍ଷରେ ନିଷିଦ୍ଧ ଥିଲା । ତଥାପି ଅସୀମ ସାହସୀ ରାମମୋହନ ନିଜର ଜ୍ଞାନପିପାସା ଚରିତାର୍ଥ କରିବାଲାଗି ଗୃହତ୍ୟାଗର ପ୍ରାୟ ଆଠମାସ ପରେ ତିବ୍ବତରେ ପଦାର୍ପଣ କଲେ । ଏହି ଘଟଣାରେ ସେ ସମୟର ଜଣେ ଇଂରେଜ ଅଫିସର କହିଥିଲେ—"ରାମମୋହନ ରାୟ ଆଉ କୌଣସି କାର୍ଯ୍ୟ ନ କରିଥିଲେ ସୁଦ୍ଧା ଏହି ଗୋଟିଏ ଘଟଣା ଲାଗି ବୀରରୂପେ ଖ୍ୟାତ ହୋଇଥାଆନ୍ତେ ।"

ତିବ୍ବତ ସାରା ଅନେକଗୁଡ଼ିଏ ବୌଦ୍ଧ ମଠ ରହିଛି ଏବଂ ଏହି ମଠଗୁଡ଼ିକ ପରିଚାଳନା କରୁଥିଲେ ବୌଦ୍ଧ ସନ୍ନ୍ୟାସୀ ବା 'ଲାମା'ମାନେ । ପ୍ରତି ମଠରେ ଲାମାମାନେ ଥିଲେ ନିଜ ନିଜ ଅଞ୍ଚଳର ଜମିଦାର ତଥା ଶାସନକର୍ତ୍ତା । ଆଉ ସବୁଠାରୁ ବଡ଼ ଲାମା 'ଦଲାଇ ଲାମା' ଥିଲେ ସାରା ତିବ୍ବତର ସର୍ବେସର୍ବା । ତିବ୍ବତୀୟ-ମାନେ ବିଶ୍ୱାସ କରୁଥିଲେ ଯେ ଦଲାଇ ଲାମା ବୁଦ୍ଧଙ୍କ ଅବତାର ଅର୍ଥାତ୍ ସାକ୍ଷାତ ଭଗବାନ । ତେଣୁ ଦଲାଇ ଲାମାଙ୍କର ପ୍ରତ୍ୟେକ କଥା ଓ ସିଦ୍ଧାନ୍ତକୁ ସେମାନେ ଭଗବାନଙ୍କ ମୁଖର ବାଣୀପରି ମାନୁଥିଲେ ।

ତିବ୍ବତ ରହଣିର ପ୍ରାୟ ଏକବର୍ଷ ମଧ୍ୟରେ ରାମମୋହନ ବିଭିନ୍ନ ମଠକୁ ଯାଇ ସେଠାରେ ଥିବା ବୌଦ୍ଧଧର୍ମର ମୂଳ ଶାସ୍ତ୍ରଗୁଡ଼ିକୁ ପଢ଼ିବା ପରେ ତାଙ୍କର ହୃଦ୍‌ବୋଧ ହେଲା ଯେ ଦଲାଇ ଲାମାଙ୍କୁ 'ବୁଦ୍ଧଙ୍କ ଅବତାର' ବା 'ଭଗବାନ' ବିଚାରିବା ସଂପୂର୍ଣ୍ଣ ଭ୍ରମାତ୍ମକ । ପୁଣି ତାନ୍ତ୍ରିକତାର ପ୍ରଭାବ ଯୋଗୁଁ ସେ ସମୟର ବୌଦ୍ଧମାନେ, ବିଶେଷରେ ତିବ୍ବତୀୟ ବୌଦ୍ଧମାନେ, ନାନା ଉପଦେବତା ଓ ଅପ-ଦେବତାଙ୍କର ପୂଜା ନିୟମିତ ଭାବରେ କରୁଥିଲେ । ଏଇ କ୍ଷୁଦ୍ର ଦେବତାମାନଙ୍କର ସନ୍ତୁଷ୍ଟି ନିମିତ୍ତ ବର୍ଷ ମଧ୍ୟରେ ଏକାଧିକ ମେଳା-ମଉଛବର ଆୟୋଜନ କରାଯାଇ ସେମାନଙ୍କ ଉଦ୍ଦେଶ୍ୟରେ ବହୁ ଭୋଗରାଗ ଦିଆଯାଉଥିଲା ।

ରାମମୋହନ ଦେଖିଲେ ଯେ ବୁଦ୍ଧଦେବଙ୍କ ଉପଦେଶଗୁଡ଼ିକ ମଧ୍ୟରେ ଏପରି 'ପ୍ରତିନିଧିବାଦ' ଓ 'ଷେତ୍ରପୂଜା'ର ସମର୍ଥନ ତ ଦୂରର କଥା, ସୂଚନା ମଧ୍ୟ ନାହିଁ । ସେଇ ଶ୍ରୁତିରୁଣ ବୟସରେ ସେ ଅନୁଭବ କଲେ ଯେ ଏଇସବୁ ଭ୍ରାନ୍ତ ଓ ଭ୍ରଷ୍ଟାଚାରଯୋଗୁଁ ତିବ୍ବତର ଲୋକ-ସାଧାରଣ ବୌଦ୍ଧଧର୍ମର ମହାନ୍ ଆଦର୍ଶଠାରୁ ବହୁ ଦୂରକୁ ଅପସରି ଯାଇ ଦଲାଇ ଲାମା ସମ୍ପ୍ରଦାୟର କ୍ରୀତଦାସ ହୋଇ ରହିଛନ୍ତି । ରାମମୋହନଙ୍କ ସତ୍ୟନିଷ୍ଠ ଓ ତେଜସ୍ୱୀ ହୃଦୟ ଏପରି ଅନ୍ୟାୟକୁ ବରଦାସ୍ତ କରିପାରିଲା ନାହିଁ । ସେ ସ୍ୱତଃପ୍ରବୃତ୍ତ ହୋଇ ଲାମାମାନଙ୍କ ସହିତ ଏଇସବୁ ମତବାଦ ଓ ଆଚରଣର ଯଥାର୍ଥତା ସମ୍ବନ୍ଧରେ ଯୁକ୍ତିତର୍କ ଓ ବିଚାର ଆରମ୍ଭକଲେ ।

ଲାମାମାନେ ପ୍ରଥମେ ଏଇ ବିଦେଶୀ ତରୁଣର ବକ୍ତବ୍ୟ ଉପରେ ବିଶେଷ ଗୁରୁତ୍ୱ ଆରୋପ କରୁନଥିଲେ; କାରଣ ସେମାନଙ୍କର ବିଶ୍ୱାସ ଥିଲା ଯେ ବୌଦ୍ଧଧର୍ମ ସମ୍ବନ୍ଧରେ ରାମମୋହନଙ୍କ ଜ୍ଞାନ ଅତି

ସୀମାବଦ୍ଧ । ମାତ୍ର ଅଳ୍ପଦିନ ମଧ୍ୟରେ ସେମାନେ ଆତଙ୍କିତ ହୋଇ ଉପଲବ୍‌ଧି କଲେ ଯେ ନିଜ ଧର୍ମ ସମ୍ବନ୍ଧରେ ସେମାନଙ୍କର ଜ୍ଞାନ ସେଇ ବିଧର୍ମୀ ବିଦେଶୀର ବ୍ୟୁତ୍ପତ୍ତି ତୁଳନାରେ ଅତି ତୁଚ୍ଛ ଏବଂ ବୁଦ୍ଧଙ୍କର ମୂଳବାଣୀ ଉପରେ ଆଧାରିତ ତାର ଯୁକ୍ତିଗୁଡ଼ିକୁ ଖଣ୍ଡନ କରିବା ସେମାନଙ୍କର ଅସାଧ୍ୟ । ଏଇ ଘଟଣାରେ ଲାମାମାନେ ଆତଙ୍କିତ ହୋଇପଡ଼ିଲେ; କାରଣ ଏକଥା ପ୍ରକାଶ ପାଇଲେ ଯୁଗ ଯୁଗ ଧରି ତିବ୍ବତବାସୀଙ୍କ ଉପରେ ସେମାନେ ଯେଉଁ ଅଖଣ୍ଡ ଆଧିପତ୍ୟ ବିସ୍ତାର କରି ଆସିଛନ୍ତି ତାହା ଅଳ୍ପଦିନେ ଧ୍ୱଂସପାଇଯିବ । ତେଣୁ ନିଜର ପ୍ରଭାବ ପ୍ରତିପତ୍ତି ଅକ୍ଷୁଣ୍ଣ ରଖିବା ଲାଗି ଏଇ ସ୍ୱାର୍ଥପର ଲାମାମାନେ ରାମମୋହନଙ୍କୁ ଗୋପନରେ ହତ୍ୟା କରିବା ସକାଶେ ଏକ ଷଡ଼ଯନ୍ତ୍ର କଲେ ।

ରାମମୋହନ ତିବ୍ବତରେ ଯେଉଁ ବ୍ୟକ୍ତିଙ୍କ ଘରେ ଆଶ୍ରୟ ନେଇଥିଲେ, ତାଙ୍କର ପତ୍ନୀ ପ୍ରାର୍ଥନାନିମନ୍ତେ ଅନେକ ସମୟରେ ନିକଟସ୍ଥ ମଠକୁ ଯାଉଥିଲେ । ସେଇ ମଠର ଲାମାମାନେ ମଧ୍ୟ ଷଡ଼ଯନ୍ତ୍ରର ଅଂଶୀଦାର ଥିଲେ । ଏଇ ମହିଳା ତିବ୍ବତବାସିନୀ ଓ ବୌଦ୍ଧ ହୋଇଥିବା ଯୋଗୁଁ ଲାମାମାନେ ତାଙ୍କ ନିକଟରେ ସେପରି ସତର୍କତା ଅବଲମ୍ବନ କରିନଥିଲେ । ଫଳରେ ଏଇ ନିଷ୍ଠୁର ଚକ୍ରାନ୍ତ କଥା ଜାଣିପାରି ସେହି ସ୍ନେହମୟୀ ଧାର୍ମିକା ରମଣୀ ରାତାରାତି ରାମମୋହନଙ୍କୁ ଅନ୍ୟ ଏକ ନିରାପଦ ସ୍ଥାନକୁ ଘୁଞ୍ଚାଇଆଣି ଆଠ ଦଶ ଦିନ ଯାଏ ଲୁଚାଇ ରଖିଲେ ଏବଂ ସୁଯୋଗ ମିଳିବା ମାତ୍ରେ ତାଙ୍କୁ ଛଦ୍ମବେଶରେ ତିବ୍ବତ ସୀମା ଅତିକ୍ରମ କରି ଭାରତରେ ପହଞ୍ଚିବାର ବନ୍ଦୋବସ୍ତ କରିଦେଲେ । ଏଇ ମହତ୍ ଅଥଚ କଠିନ କାମରେ ସହଯୋଗ କରିଥିଲେ ତାଙ୍କର ପରି ଆଉ କେତେ ଜଣ ଦୟାଶୀଳା ରମଣୀ ।

ସେମାନେ କିଶୋର ରାମମୋହନଙ୍କୁ ତିବ୍ବତୀ ପରିବେଶରେ ସଜାଇ କେଇଜଣ ବିଶ୍ୱାସୀ ମେଷପାଳଙ୍କ ଦ୍ୱାରା ତିବ୍ବତ ସୀମା ଅତିକ୍ରମ କରାଇଥିଲେ ।

ଏଇ ଘଟଣା ଯୋଗୁଁ ରାମମୋହନ ସେ ରମଣୀମାନଙ୍କ ପ୍ରତି ଆଜୀବନ କୃତଜ୍ଞ ରହିବା ସଙ୍ଗେ ସଙ୍ଗେ ନାରୀଜାତିର କଲ୍ୟାଣ ଓ ଉନ୍ନତି ବିଧାନକୁ ନିଜର ଏକ ପ୍ରଧାନ କର୍ତ୍ତବ୍ୟ ବୋଲି ଗ୍ରହଣ କରିଥିଲେ ଏବଂ ଜୀବନର ଶେଷ ଦିନଯାଏ ଏହି ଲକ୍ଷ୍ୟରୁ କଦାପି ବିଚ୍ୟୁତ ହୋଇନଥିଲେ ।

## ଜୀବନ-ସଂଗ୍ରାମ

ତିବ୍ବତୀୟ ରମଣୀମାନଙ୍କ ସ୍ନେହ ଓ ସାହାଯ୍ୟ ଯୋଗୁଁ ଗୃହ-ତ୍ୟାଗର ପ୍ରାୟ ଚାରି ବର୍ଷ ପରେ, କୋଡ଼ିଏ ବର୍ଷ ବୟସରେ ରାମମୋହନ ପୁଣି ନିଜ-ଗ୍ରାମରେ ପାଦ ପକାଇଲେ । ଏ ସମୟକୁ ରାମକାନ୍ତ ଓ ତାରିଣୀଙ୍କ ମନ ଚାରିବର୍ଷ ପୂର୍ବର କ୍ରୋଧଭାବ ପରି-ବର୍ତ୍ତେ ନିରୁଦ୍ଦିଷ୍ଟ ପୁଅ ଲାଗି ସ୍ନେହ ଓ ବ୍ୟାକୁଳତାରେ ଭରିଯାଇଥିଲା । ସେମାନଙ୍କର ନିଶ୍ଚିତ ଧାରଣା ଥିଲା ଯେ ଚାରି ବର୍ଷବ୍ୟାପୀ ନାନା ଦୁଃଖ-କଷ୍ଟର ଆଘାତରେ ରାମମୋହନ ନିଜ ମନରୁ ପୂର୍ବର ଉଦ୍ଭଟ ଓ ମ୍ଲେଚ୍ଛ ମତବାଦଗୁଡ଼ିକୁ ପୋଛିପକାଇଥିବ । ତେଣୁ ରାମମୋହନ ଗ୍ରାମରେ ପହଞ୍ଚିବାମାତ୍ରେ ରାମକାନ୍ତ ଅତି ସ୍ନେହରେ ତାଙ୍କୁ ଘରକୁ ପାଛୋଟି ଆଣିଲେ । ତାରିଣୀ ମଧ୍ୟ ହଜିଲା ପୁଅକୁ କୋଳକୁ ଟାଣିନେଲେ ।

ଘରସଂସାର କଲେ ପୁଅର ମନ ସ୍ଥିର ହେବ ବୋଲି ରାମକାନ୍ତ ସେହି ବର୍ଷ ଏକ ସୁନ୍ଦରୀ ବାଳିକା ସହିତ ରାମମୋହନଙ୍କୁ ବିଭା କରାଇଦେଲେ । ପରବର୍ଷ ଆଉ ଏକ ସୁଶ୍ରୀ ବାଳିକା ସହିତ ତାଙ୍କର ଦ୍ୱିତୀୟ ବିବାହ ସମ୍ପନ୍ନ କଲେ । କହିବା ବାହୁଲ୍ୟ, ସେ ଯୁଗରେ ଅଭିଜାତ ସମାଜ, ବିଶେଷରେ କୁଳୀନ ବ୍ରାହ୍ମଣମାନଙ୍କ କ୍ଷେତ୍ରରେ ବହୁବିବାହ ଏକ ସୁସ୍ଥ ଓ ସ୍ୱୀକୃତ ପ୍ରଥା ଥିଲା । ରାମକାନ୍ତ ନିଜେ ମଧ୍ୟ ଏକାଧିକ ବିବାହ କରିଥିଲେ; ମାତ୍ର ତାରିଣୀ ଦେବୀ ବା ଫୁଲ-ଠାକୁରାଣୀ ଥିଲେ ତାଙ୍କ ପରିବାରର କର୍ତ୍ତ୍ରୀ । ଏହା ୧୮୦୨ ମସିହାର ଘଟଣା । ଏହାପରେ ରାମମୋହନ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ଆପାତତଃ ଶାନ୍ତିର ମୁଖା ପିନ୍ଧି ସାଂସାରିକ ଜୀବନ ଯାପନ କରିଥିଲେ । କିନ୍ତୁ ନିଆଁ କେତେଦିନଯାଏ ନିଜକୁ ଗୋପନ କରିପାରେ ? ଦିନେ-ନା-ଦିନେ ତାକୁ ଯେକୌଣସି ପ୍ରକାରେ ଆତ୍ମପ୍ରକାଶ କରିବାକୁହିଁ ପଡ଼େ । ରାମମୋହନଙ୍କ କ୍ଷେତ୍ରରେ ମଧ୍ୟ ତାହିଁରେ ବ୍ୟତିକ୍ରମ ଘଟିନଥିଲା ।

ଏକ ତୀବ୍ର ଅନୁସନ୍ଧିତ୍ସା ରାମମୋହନଙ୍କ ଜୀବନକୁ ନିୟନ୍ତ୍ରିତ କରୁଥିଲା । ଏ ବିଷୟରେ ତାଙ୍କର ସମସାମୟିକ ଜଣେ ବନ୍ଧୁ କହିଛନ୍ତି ଯେ, ଦିନେ ରାମମୋହନ ସକାଳୁ ନିଜ କୋଠରିରେ ବସି ସଂସ୍କୃତ ବାଲ୍ମୀକି ରାମାୟଣ ପଢ଼ିବାକୁ ଆରମ୍ଭ କଲେ । ରାମାୟଣ ହିନ୍ଦୁ ଧର୍ମର ଏକ ବିଶିଷ୍ଟ ଅଙ୍ଗ । ତେଣୁ ସେ ଗଭୀର ମନୋଯୋଗ ସହ ତାହା ପଢ଼ିବାକୁ ଲାଗିଲେ । କ୍ରମେ ଦିନ ଦ୍ୱିପ୍ରହର ହୋଇ-ଗଲା—ମାତ୍ର ତାଙ୍କର ପାଠ ଶେଷ ହେଲାନାହିଁ । ଅଧ୍ୟୟନ ଆରମ୍ଭ ପୂର୍ବରୁ ରାମମୋହନ ତାଙ୍କୁ ନ ଡାକିବା ପାଇଁ ସକାଳେ ଘରର ସମସ୍ତଙ୍କୁ ବାରମ୍ବାର ନିଷେଧ କରିଥିଲେ । ତେଣୁ ଆହାର ସମୟ ଅତିକ୍ରମ

କରିଯାଉଛନ୍ତି ଜାଣି ସୁଦ୍ଧା କେହି ତାଙ୍କୁ ଡାକିବା ପକାଶେ ସାହସ କଲେ ନାହିଁ । କ୍ରମେ ପରିବାରର ଅନ୍ୟମାନେ ଜଣ ଜଣ ହୋଇ ଅନ୍ନ ଗ୍ରହଣ କଲେ; ମାତ୍ର ପୁଅ ନଖାଇଥିବା ଯୋଗୁଁ ତାରିଣୀ ଦେବୀ ଉପବାସ ରହିଲେ । ପ୍ରାୟ ସୂର୍ଯ୍ୟାସ୍ତ ସମୟକୁ ପାଠ ଶେଷ କରି ରାମମୋହନ ନିଜ କୋଠରି ଭିତରୁ ପଦାକୁ ଆସିଲେ । ମାତ୍ର ଦଶ ଘଣ୍ଟା ମଧ୍ୟରେ ସାତ କାଣ୍ଡ ରାମାୟଣ ପାଠ କରିପାରିବା ସାଧାରଣ କଥା ନୁହେଁ । ସେଦିନ ସଂଧ୍ୟା ସମୟରେ ରାମମୋହନ ଓ ତାରିଣୀଦେବୀ ଅନ୍ନ ଗ୍ରହଣ କରିଥିଲେ ।

ଯାହା ହୃଦୟରେ ଜ୍ଞାନର ଅଗ୍ନି ଥରେ ଜଳିଲେ ତାହା ସହଜରେ ଲିଭେ ନାହିଁ, ବରଂ ଅଧିକରୁ ଅଧିକ ଉଜ୍ଜ୍ୱଳ ହୋଇଉଠେ । ବିଭିନ୍ନ ଶାସ୍ତ୍ର ଅଧ୍ୟୟନ କରି ଏକ ସର୍ବବ୍ୟାପୀ ରୂପାତୀତ ଈଶ୍ୱରଙ୍କ ଉପାସନା ଲାଗି ରାମମୋହନଙ୍କ ବ୍ୟାକୁଳତା ଅଧିକତର ହେଲା । ଫଳରେ ପିତାପୁତ୍ରଙ୍କ ମଧ୍ୟରେ ପୁଣି ତୀବ୍ର ମତଭେଦ ଦେଖାଦେଲା ଏବଂ ଶେଷରେ ରାମକାନ୍ତଙ୍କ ଆଦେଶରେ ରାମମୋହନ ପୁଣି ଗୃହ ତ୍ୟାଗ କରି ନିଜର ଦୁଇ ପତ୍ନୀଙ୍କୁ ସଙ୍ଗରେ ଧରି କାଶୀଧାମକୁ ଚାଲିଗଲେ ।

ଏଥର କାଶୀଧାମରେ ରାମମୋହନ ପ୍ରାୟ ବାର ବର୍ଷ ରହିଲେ । ଏଠାରେ ପଦାଙ୍କ ଉପନିଷଦ୍‌ଗୁଡ଼ିକ ଅଧ୍ୟୟନ କରିବା ଲାଗି ତାଙ୍କ ମନରେ ତୀବ୍ର ଆଗ୍ରହ ଉପୁଜିଲା । ଏହିଠାରେ ହିଁ ୧୮୦୪ ମସିହାରେ ତାଙ୍କର ଜ୍ୟେଷ୍ଠପୁତ୍ର ରାଧାକାନ୍ତ ଜନ୍ମଗ୍ରହଣ କଲା । ତେଣୁ ପରିବାର ପୋଷଣ ଲାଗି ରାମମୋହନ ବାଧ୍ୟହୋଇ ସ୍ଥାନୀୟ ଅଦାଲତରେ ନକଲନବିସ (Copyist) କାର୍ଯ୍ୟ ଗ୍ରହଣ କଲେ । ଅବସର ସମୟରେ ସେଠାକାର ବଶିଷ୍ଟ ପଣ୍ଡିତମାନଙ୍କ

ସହାୟତାରେ ସେ ଗୋଟିକ ପରେ ଗୋଟିଏ ଉପନିଷଦ୍ ଅଧ୍ୟୟନ କରିବାକୁ ଲାଗିଲେ ।

କାଶୀଧାମରେ ରହିବା ସମୟରେ ଇଂରାଜୀ ଶିଖିବା ଲାଗି ରାମମୋହନଙ୍କ ମନରେ ବିଶେଷ ଆଗ୍ରହ ଉପୁଜିଲା । ସଂସ୍କୃତ, ପାଲି, ପାର୍ଶୀ ଓ ଆରବୀ ଭାଷାରେ ବିଶେଷ ଦକ୍ଷତା ଅର୍ଜନ କରିଥିଲେ ସୁଦ୍ଧା ଇଂରାଜୀ ଭାଷାରେ ସେ ଏକପ୍ରକାର ଅଜ୍ଞ ଥିଲେ । ମାତ୍ର ସେଠାରେ ଉପଯୁକ୍ତ ଇଂରାଜୀ ଶିକ୍ଷକ ନମିଳିବା ଯୋଗୁଁ ସେ ଅଦାଲତରେ 'ଦୋଭାଷୀ' (Interpretor)ମାନଙ୍କ ସହାୟତାରେ ଯେତେଦୂର ସମ୍ଭବ ଇଂରାଜୀ ଶିଖିବା ଆରମ୍ଭକଲେ ।

୧୮୦୩ ମସିହାରେ ରାମକାନ୍ତଙ୍କର ଦେହାନ୍ତ ଘଟିଲା । ଧର୍ମ ସମ୍ପର୍କରେ ମତଭେଦ ଯୋଗୁଁ ସେ ରାମମୋହନଙ୍କୁ ଘରୁ ବିତାଡ଼ିତ କରିଥିଲେ ସୁଦ୍ଧା, ତାଙ୍କ ହୃଦୟ ଭିତରେ ପୁତ୍ର-ସ୍ନେହ ଲିଭି ଯାଇନଥିଲା । ତେଣୁ ମୃତ୍ୟୁ ପୂର୍ବରୁ ସେ ଏକ ଇଚ୍ଛା-ପତ୍ର (Will) ଦ୍ୱାରା ତାଙ୍କ ଦୁଇପୁତ୍ର ଜଗନ୍ମୋହନ ଓ ରାମମୋହନଙ୍କୁ ନିଜର ସମସ୍ତ ସମ୍ପତ୍ତିର ସମାନ ଅଧିକାରୀ ସାବ୍ୟସ୍ତ କରିଥିଲେ । ପିତା ରାମକାନ୍ତଙ୍କ ମୁମୂର୍ଷୁ ଅବସ୍ଥାର ଖବର ପାଇ ରାମମୋହନ ସଙ୍ଗେ ସଙ୍ଗେ ନିଜ ପୈତୃକ ଗୃହକୁ ଫେରିଯାଇ ପିତାଙ୍କ ଅନ୍ତିମ ଶଯ୍ୟା ନିକଟରେ ରହିଥିଲେ । ସେ କହିଯାଇଛନ୍ତି ଯେ ତାଙ୍କ ପିତା ଇଷ୍ଟଦେବତାଙ୍କ ନାମ ଉଚ୍ଚାରଣ କରୁ କରୁ ପ୍ରାଣତ୍ୟାଗ କରିଥିଲେ ।

ପିତାଙ୍କ ମୃତ୍ୟୁ ପରେ ରାମମୋହନ ନିଜ ପୈତୃକ ଗୃହରେ ବସବାସ ଆରମ୍ଭ କଲେ । ପିତୃ-ବିୟୋଗ ସତ୍ତ୍ୱେ ତାଙ୍କର ପୂର୍ବର ମତବାଦ ଆଦୌ ବଦଳିଲା ନାହିଁ ଏବଂ ମୂର୍ତ୍ତି-ପୂଜା ବା ସାକାର-ସାଧନାକୁ ହେୟ ପ୍ରତିପନ୍ନ କରି ସେ-ସମୟର ଅଭିଜାତ ଶ୍ରେଣୀ

ଯାର୍ଣୀରେ 'ତହଫାତୁଲ ମଓହେଦ୍ଦୀନ' ବା 'ସବୁପ୍ରକାର ସାକାର ପୂଜାର ପ୍ରତିବାଦ' ନାମରେ ଖଣ୍ଡେ ପୁସ୍ତିକା ପ୍ରକାଶ କରି ସାକାର ପୂଜାର ବିଭିନ୍ନ ତ୍ରୁଟି ଓ ଭ୍ରାନ୍ତି ଦର୍ଶାଇଲେ । ଏଇ ପୁସ୍ତିକାଟି ଦେଶସାରା ଏକ ଭୂମୂଳ ଆନ୍ଦୋଳନ ସୃଷ୍ଟି କଲା । ଢାକା ସରକାରୀ ବିଦ୍ୟାଳୟର ଅଧ୍ୟକ୍ଷ ସେଇ ବହିଟିକୁ ଇଂରାଜୀରେ ଅନୁବାଦ କରି ପ୍ରକାଶ କଲେ । ଉକ୍ତ ପୁସ୍ତିକାର ପ୍ରଭାବ ସମ୍ପର୍କରେ ରାମମୋହନଙ୍କ ଜୀବନୀକାର କୁମାରୀ କଲେଟ୍ (Miss Collett) ଲେଖିଛନ୍ତି ଯେ, ତତ୍କାଳୀନ ଇଂଲଣ୍ଡର ବହୁ ଶିକ୍ଷିତ ବ୍ୟକ୍ତି ମଧ୍ୟ ଆଗ୍ରହ ସହକାରେ ଉକ୍ତ ବହିଟି କିଣି ପଢ଼ିଥିଲେ ।

ପୁତ୍ରର ଏପରି ମତଗତିରେ ଅତ୍ୟନ୍ତ ବିରକ୍ତ ଓ କ୍ଷୁବ୍ଧ ହୋଇ ତାରିଣୀ ଦେବୀ ରାମମୋହନଙ୍କୁ 'ବିଧର୍ମୀ ଓ ଭ୍ରଷ୍ଟାଚାରୀ' ବୋଲି ଉଲ୍ଲେଖ କରି ତାଙ୍କୁ ପୈତୃକ ସମ୍ପତ୍ତିରୁ ବଞ୍ଚିତ କରିବା ସକାଶେ କଲିକତା ହାଇକୋର୍ଟରେ ଏକ ମକଦ୍ଦମା ଦାଏର କଲେ । ଏହି ମକଦ୍ଦମା ପ୍ରାୟ ଦୁଇ ବର୍ଷ ପର୍ଯ୍ୟନ୍ତ ଚାଲିଥିଲା । ଏଇ ସମୟରେ ରାମମୋହନ ନିଜ ପୈତୃକ ଗୃହରେହିଁ ବସବାସ କରୁଥିଲେ । ମକଦ୍ଦମା ତାରିଖ ପଡ଼ିବା ଦିନମାନଙ୍କରେ କଚେରିକୁ ଯିବା ପୂର୍ବରୁ ରାମମୋହନ ନିର୍ମଳ ଓ ସଶ୍ରଦ୍ଧ ଚିତ୍ତରେ ନିଜ ମାତାଙ୍କ ପଦଧୂଳି ଗ୍ରହଣ କରି ଘରୁ ପାଦ କାଢ଼ୁଥିଲେ । ଅଦାଲତରେ ନିଜ ଜମାନ-ବନ୍ଦିରେ ରାମମୋହନ ସ୍ପଷ୍ଟ ଭାବରେ କହିଥିଲେ—"ମୁଁ ହିନ୍ଦୁ ଏବଂ ହିନ୍ଦୁଧର୍ମର ବିରୋଧୀ ନୁହେଁ । ମାତ୍ର ହିନ୍ଦୁ ଧର୍ମ ନାମରେ ଯେଉଁସବୁ ଭ୍ରାନ୍ତ ଧାରଣା ଓ କୁ-ପ୍ରଥା ପ୍ରଚଳିତ ହୋଇଛି ସେଗୁଡ଼ିକ ନିର୍ମୂଳ କରିବାହିଁ ମୋର ଏକମାତ୍ର ଉଦ୍ଦେଶ୍ୟ ।" ଏହା କହି ସେ ନିଜ ମତବାଦର ସମର୍ଥନରେ ବେଦାନ୍ତ ଓ ଉପନିଷଦ୍‌ରୁ କେତେକ

ଉଦ୍ଧୃତ ବକ୍ତବ୍ୟକୁ ଦର୍ଶାଇଲେ । ଶେଷକୁ ହାଇକୋର୍ଟ ରାୟ ଦେଲେ ଯେ, ରାମମୋହନ ଅହିନ୍ଦୁ ନୁହନ୍ତି ବା ହିନ୍ଦୁଧର୍ମର ବିରୋଧୀ ନୁହନ୍ତି ।

ଏହି ସମୟରେ ରାମଜୟ ବଟବ୍ୟାଲ ବୋଲି ଜଣେ ସ୍ୱାମାୟ ଧର୍ମ ବ୍ୟକ୍ତିଙ୍କ ପ୍ରରୋଚନାରେ ପ୍ରତ୍ୟହ ରାତ୍ରି ରାତିରେ ଦଳେ ଦୁଷ୍ଟ ବ୍ୟକ୍ତି ରାମମୋହନଙ୍କ ବାସଗୃହ ଭିତରକୁ ଗୋରୁହାଡ଼ ଫିଙ୍ଗି ତାଙ୍କୁ ବିଧର୍ମୀ ପ୍ରମାଣିତ କରିବାକୁ ଉଦ୍ୟମ ଚଳାଇଥିଲେ । ସ୍ୱଜାତି ତଥା ସ୍ୱଦେଶବାସୀଙ୍କ ଏପରି ଅପପ୍ରଚାର ଯୋଗୁଁ ରାମମୋହନ ଗଭୀର ଦୁଃଖ ଅନୁଭବ କରୁଥିଲେ । ଏ ପ୍ରସଙ୍ଗରେ ଗୋଟିଏ ଘଟଣା ଉଲ୍ଲେଖଯୋଗ୍ୟ । ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପିତାମହ ଦ୍ୱାରକାନାଥ ଠାକୁର ରାମମୋହନଙ୍କ ସମସାମୟିକ ଓ ସମର୍ଥକ ଥିଲେ । ଦ୍ୱାରକାନାଥଙ୍କ ଜ୍ୟେଷ୍ଠ ପୁତ୍ର ଓ ରବୀନ୍ଦ୍ରନାଥଙ୍କ ପିତା ଦେବେନ୍ଦ୍ରନାଥ ସେ ସମୟରେ ବାର ତେର ବର୍ଷର ବାଳକ । ସେହି ବୟସରୁହିଁ ଦେବେନ୍ଦ୍ରନାଥ ରାମମୋହନଙ୍କ ପ୍ରତି ଏକ ସଶ୍ରଦ୍ଧ ଓ ଆନ୍ତରିକ ଆକର୍ଷଣ ଅନୁଭବ କରୁଥିଲେ । ପୁଣି ରାମମୋହନ ବି ଗଭୀର ସ୍ନେହ ଯୋଗୁଁ ବାଳକ ଦେବେନ୍ଦ୍ରନାଥଙ୍କୁ ନିଜର ଏକ କ୍ଷୁଦ୍ର ବନ୍ଧୁ ବୋଲି ବିବେଚୁଥିଲେ ଏବଂ 'ବେରାଦର' ବୋଲି ଡାକୁଥିଲେ । ଫଳରେ ରାମମୋହନଙ୍କ ଘରେ ଦେବେନ୍ଦ୍ରନାଥଙ୍କର ଅବାଧ ଯାତାୟାତ ଥିଲା । ନିଜ ସ୍ମୃତିକଥାରେ ଦେବେନ୍ଦ୍ରନାଥ ଲେଖି-ଛନ୍ତି—"ଦିନେ ସକାଳେ ହଠାତ୍ ରାଜାଙ୍କ ଘରଭିତରକୁ ପଶିଯାଇ ଦେଖିଲି ସେ ସ୍ନାନସାରି ଅଟାରୁଟି ଓ ମହୁ ଜଳଖିଆ କରୁଛନ୍ତି । ମତେ ଦେଖି ସେ ଟିକେ ହସି କହିଲେ—ଦେଖ ବେରାଦର, ମୁଁ ରୁଟି ଆଉ ମହୁ ଖାଉଛି । ମାତ୍ର ଲୋକେ କହୁଛନ୍ତି ମୁଁ କୁଆଡ଼େ

ଗୋମାଂସ ଖାଏ ।" ଏହି ମନ୍ତବ୍ୟଟିରୁ ରାମମୋହନଙ୍କ ଅନ୍ତର୍ନିହିତ ଦୁଃଖ ଓ କ୍ଷୋଭର ସ୍ପଷ୍ଟ ସୂଚନା ମିଳେ । ଆହୁରି ଉଲ୍ଲେଖଯୋଗ୍ୟ ଯେ, ରାମମୋହନ ବିଲାତଯାତ୍ରା ସମୟରେ, ଜାହାଜରେ ତଥା ବିଲାତରେ ନିଜର ଅଭ୍ୟସ୍ତ ଆହାର ପାଇବା ନିମନ୍ତେ ନିଜ ସଙ୍ଗରେ ଦୁଇ ଜଣ ବ୍ରାହ୍ମଣ ପାଚକଙ୍କୁ ନେଇ ଯାଇଥିଲେ । ତଥାପି ସେ ସମୟର ସଂସ୍କାର-ବିରୋଧୀ ଲୋକେ ରାମମୋହନ ବଞ୍ଚିଥିବାଯାଏ ତାଙ୍କ ନାମରେ କପୋଳକଳ୍ପିତ ନାନା ନିନ୍ଦା ଓ ଅପପ୍ରଚାର ଚଳାଇଥିଲେ ।

## କର୍ମକ୍ଷେତ୍ରରେ ପ୍ରବେଶ

ରାମମୋହନ ପ୍ରାୟ ଦଶ ବର୍ଷ ପର୍ଯ୍ୟନ୍ତ ମୁର୍ଶିଦାବାଦ ଓ ରଂପୁର ଅଞ୍ଚଳର ଦେଓ୍ୱାନ ଭାବରେ କାର୍ଯ୍ୟ କରି ଯଥେଷ୍ଟ ପ୍ରଶଂସା ଓ ପ୍ରଚୁର ଧନସମ୍ପତ୍ତି ଅର୍ଜନ କରିଥିଲେ । ମାତ୍ର ଇଂରେଜ ତାଙ୍କର ଉଦ୍ଦେଶ୍ୟ ଓ ଧନସମ୍ପତ୍ତି ତାଙ୍କର ଅଭୀଷ୍ଟ ନଥିଲା । ତାଙ୍କ ଜୀବନର ଚରମ ଲକ୍ଷ୍ୟ ଥିଲା ଦେଶ ଓ ସମାଜର ଉପକାର ସାଧନ । ଇଂରେଜଙ୍କ ଅଧୀନରେ ଲିପ୍ତ ରହିଲେ ଏ ଦିଗରେ ଆଶାନୁରୂପ କାର୍ଯ୍ୟ କରିହେବ ନାହିଁ ବୁଝି ରାମମୋହନ ସ୍ୱେଚ୍ଛାରେ ୨୦ ଜୁଲାଇ ୧୮୧୪ ଦିନ ବୟାଳିଶ ବର୍ଷ ବୟସରେ ନିଜ କାର୍ଯ୍ୟରୁ ଅବସର ଗ୍ରହଣ କରି, ଉଚ୍ଚତର ଓ ମହତ୍ତର କାର୍ଯ୍ୟ ସାଧନ ଲାଗି କଲିକତାର ସାର୍କୁଲାର ରୋଡ଼ରେ ଗୋଟିଏ କୋଠା କିଣି, ସେଇଠାରେ ବସବାସ ଆରମ୍ଭ କଲେ । ଏଇ ଘରଟି ଆଜିଯାଏ ଏକ ଐତିହାସିକ ତଥା ଜାତୀୟ ସମ୍ପଦ ରୂପେ ଭାରତ ସରକାରଙ୍କ

ହେପାଜତରେ ରହିଛି ଏବଂ ଭାରତର ପୂର୍ବତନ ବଡ଼ଲାଟ ଲର୍ଡ଼ କର୍ଜନ ଘରଟିକୁ ନିର୍ଦ୍ଦିଷ୍ଟ କରିବା ଲାଗି ତାର ପ୍ରବେଶପଥରେ ରାମମୋହନଙ୍କ ନାମ, ଜନ୍ମ ଓ ମୃତ୍ୟୁ ତାରିଖ ଖୋଦିତ କରାଇଯାଇଛନ୍ତି ।

## ଆତ୍ମୀୟ ସଭା

ଧର୍ମ ସମ୍ବନ୍ଧରେ ନିଜର ମତାମତ ଅବିକୃତ ଭାବରେ ଦେଶର ଶିକ୍ଷିତ ସମ୍ପ୍ରଦାୟଙ୍କୁ ଜଣାଇବା ଉଦ୍ଦେଶ୍ୟରେ ୧୮୧୫ ମସିହାରେ 'ଆତ୍ମୀୟ ସଭା' ନାମରେ ଗୋଟିଏ ସମିତି ସ୍ଥାପନକଲେ । ହିନ୍ଦୁଧର୍ମର ସାରତତ୍ତ୍ୱ ସମସ୍ତଙ୍କୁ ବୁଝାଇବାହିଁ ଏଇ ସଭାର ମୂଳ ଉଦ୍ଦେଶ୍ୟ ଥିଲା । ଏହା ପୂର୍ବରୁହିଁ ପାଣ୍ଡିତ୍ୟ ଓ ଶାସ୍ତ୍ରଜ୍ଞାନ ଲାଗି ରାମମୋହନ ବିଖ୍ୟାତ ହୋଇସାରିଥିଲେ । ତେଣୁ 'ଆତ୍ମୀୟ ସଭା' ସ୍ଥାପିତ ହେବା ମାତ୍ରେ ଦ୍ୱାରକାନାଥ ଠାକୁର, କାଳୀନାଥ ମୁନ୍‌ସି, ବୃନ୍ଦାବନ ମିତ୍ର, ବୈଦ୍ୟନାଥ ମୁଖୋପାଧ୍ୟାୟ ପ୍ରମୁଖ ସେ ଯୁଗରେ ବହୁ ପଦସ୍ଥ ଓ ଶିକ୍ଷିତ ବ୍ୟକ୍ତି ଏହାର ସଭ୍ୟ ରୂପେ ଯୋଗଦେଲେ । ପ୍ରତି ସପ୍ତାହରେ ଥରେ ଲେଖାଏଁ ଏହି ସଭାର ଅଧିବେଶନ ହେଉଥିଲା । ଅଧିବେଶନର ଆରମ୍ଭରେ ପଣ୍ଡିତ ଶିବପ୍ରସାଦ ମିଶ୍ର ବେଦାନ୍ତ ଓ ଉପନିଷଦରୁ କେତେକ ଶ୍ଳୋକ ଆବୃତ୍ତି କରୁଥିଲେ । ତା ପରେ ପଣ୍ଡିତ ଗୋବିନ୍ଦ ଶାସ୍ତ୍ରୀ ବେଦ ଗାନକରୁଥିଲେ । ଏହା ପରେ ରାମମୋହନ ବ୍ୟାସଦେବ ଓ ଶଙ୍କରାଚାର୍ଯ୍ୟଙ୍କ ବେଦାନ୍ତ ଭାଷ୍ୟ ଅବଲମ୍ବନ କରି ବେଦାନ୍ତ ପ୍ରତିପାଦ୍ୟ ଅନନ୍ତ, ଅରୂପ, ପରଂବ୍ରହ୍ମଙ୍କର ଉପାସନା ବିଷୟ ବୁଝାଉଥିଲେ ।

ରାମମୋହନ ହିନ୍ଦୁ ଧର୍ମଶାସ୍ତ୍ରକୁ ଭିତ୍ତି କରି ଏକେଶ୍ୱରବାଦ ଓ ନିରାକାରସାଧନା ପ୍ରଚାର କରୁଛନ୍ତି ଦେଖି ତତ୍କାଳୀନ କଲିକତାର ବହୁ ସମ୍ଭ୍ରାନ୍ତ ହିନ୍ଦୁ ବିଚଳିତ ହୋଇପଡ଼ିଲେ । ସେମାନେ ନିଃସନ୍ଦେହରେ ବୁଝିଲେ ଯେ କିଛି କାଳ ପରେ ଏହି ସଭାହିଁ ବିଭିନ୍ନ ଦେବଦେବୀଙ୍କ ସାଡ଼ମ୍ବର ପୂଜା ଓ ସେ ସମ୍ପର୍କୀୟ ନାନା ପ୍ରଥା ବିରୁଦ୍ଧରେ ଯୁଦ୍ଧ ଘୋଷଣା କରିବ । ତେଣୁ ଆତ୍ମୀୟ ସଭାର ସତ୍ତ୍ୱ ଲୋପ କରିଦେବା ଉଦ୍ଦେଶ୍ୟରେ ରକ୍ଷଣଶୀଳ ଗୋଷ୍ଠୀର ଶିରୋମଣି ରାଜା ରାଧାକାନ୍ତ ଦେବଙ୍କ ପୃଷ୍ଠପୋଷକତାରେ 'ଧର୍ମସଭା' ନାମରେ ଏକ ସମାନ୍ତରାଳ ସମିତି ସେମାନେ ସ୍ଥାପନ କଲେ । ଏହି ଧର୍ମ-ସଭାରେ ଧର୍ମ ବା ଶାସ୍ତ୍ରଚର୍ଚ୍ଚା ପରିବର୍ତ୍ତେ 'ଆତ୍ମୀୟ ସଭା' ତଥା ରାମମୋହନଙ୍କର କୁତ୍ସା ପ୍ରଚାରହିଁ ମୁଖ୍ୟ ସ୍ଥାନ ଗ୍ରହଣ କରିଥିଲା । ରାମମୋହନ ଶାସ୍ତ୍ରର ଭୁଲ ବ୍ୟାଖ୍ୟା କରୁଛନ୍ତି, ସେ ଏବଂ ଆତ୍ମୀୟ ସଭାର ସଭ୍ୟମାନେ ଗୋମାଂସ ଖାଆନ୍ତି—ଏହିପରି ଅଜସ୍ର ନିର୍ଲଜ୍ଜ ମିଥ୍ୟା ପ୍ରଚାର କରାଗଲା । ଏହାଛଡ଼ା ଆତ୍ମୀୟ ସଭାରେ ଯୋଗ-ଦେଉଥିବା ବ୍ୟକ୍ତିମାନଙ୍କୁ ପ୍ରହାର ବା ପ୍ରାଣନାଶର ଧମକ ମଧ୍ୟ ଦିଆଗଲା । ଫଳରେ କେତେକ ଦୁର୍ବଳଚିତ୍ତ ଓ ଭୟାର୍ତ୍ତ ବ୍ୟକ୍ତି ଆତ୍ମୀୟ ସଭାର ସଂସ୍ରବ ତ୍ୟାଗ କଲେ ସୁଦ୍ଧା ଦ୍ୱାରକାନାଥ ଠାକୁର ବ୍ରଜମୋହନ ମଜୁମଦାର ପ୍ରମୁଖ କେତେଜଣ ସାହସୀ, ଜ୍ଞାନପିପାସୁ, ଏଥିରେ ନିୟମିତ ଭାବରେ ଯୋଗ ଦେବାରୁ ନିବୃତ୍ତ ହୋଇ-ନଥିଲେ । କେବଳ ସେତିକି ନୁହେଁ—ପ୍ରକାଶ୍ୟ ଭାବରେ ନିଜକୁ ରାମମୋହନଙ୍କ ସମର୍ଥକ ବୋଲି ଜଣାଇବାରେ ସୁଦ୍ଧା ଏମାନଙ୍କର କୁଣ୍ଠା ନଥିଲା । ସମୟକ୍ରମେ ଏହି ସଭା ଧର୍ମ-ସଂସ୍କାର, ସମାଜ-ସଂସ୍କାର, ରାଜନୈତିକ-ସଂସ୍କାର, ଶିକ୍ଷା-ବିସ୍ତାର ଓ ମାତୃଭାଷାର ଉନ୍ନତି ସାଧନ ଦିଗରେ ଉଲ୍ଲେଖଯୋଗ୍ୟ ଅଂଶ ଗ୍ରହଣ କରିଥିଲା ।

ଏହିସବୁ ଉଦ୍ଦେଶ୍ୟ ସାଧନ ଲାଗି ରାମମୋହନ ମୁଖ୍ୟତଃ ଚାରିଗୋଟି ଉପାୟ ଅବଲମ୍ବନ କରିଥିଲେ । ପ୍ରଥମତଃ ଲୋକଙ୍କ ସହିତ ଆଲୋଚନା, ଯୁକ୍ତିତର୍କ, ଦ୍ୱିତୀୟରେ ବିଦ୍ୟାଳୟ ସ୍ଥାପନ ଓ ଅନ୍ୟାନ୍ୟ ଉପାୟରେ ଶିକ୍ଷା ବିସ୍ତାର, ତୃତୀୟରେ ବିଭିନ୍ନ ପୁସ୍ତକ ପ୍ରକାଶନ ଓ ବିତରଣ ଏବଂ ଚତୁର୍ଥରେ ସଭା ସଂସ୍ଥାପନ ।

## ଧର୍ମବିଚାର

(କ) **ହିନ୍ଦୁ ପଣ୍ଡିତମାନଙ୍କ ସହିତ**—ଅତି ଦୁର୍ଭାଗ୍ୟର ବିଷୟ ଯେ, ରାଜା ରାମମୋହନଙ୍କୁ ତାଙ୍କ ସମସାମୟିକ ହିନ୍ଦୁ ସମାଜ ନିଜର ଏକ ବଡ଼ ଶତ୍ରୁ ମନେକରି ତାଙ୍କର ଘୋର ବିରୁଦ୍ଧାଚରଣ କରିଥିଲେ । ଅବଶ୍ୟ ସୃଷ୍ଟିରେ କିଛି ହେଲେ ଅବିମିଶ୍ର ନୁହେଁ—ଗୋଲାପ ଗଛର ସୁତୀକ୍ଷ୍ଣ କଣ୍ଟା ଆଉ ପଦ୍ମକୁ ଘେରି ରହିଥିବା ଦୂଷିତ ପଙ୍କରୁହିଁ ଏ କଥା ବେଶ୍ ଜଣାଯାଏ । ରାମମୋହନଙ୍କ ଜୀବନର ସବୁଠୁଁ ବଡ଼ ଦୁଃଖଦାୟକ ଘଟଣା ଏଇ ଯେ, ହିନ୍ଦୁଧର୍ମର ସଂସ୍କାର ଓ ସମୃଦ୍ଧି ଲାଗି ସେ ପ୍ରାଣପାତ କରିଥିଲେ ମଧ୍ୟ ତାଙ୍କ ସମସାମୟିକ ଅଧିକାଂଶ ହିନ୍ଦୁ ତାଙ୍କ ବିରୁଦ୍ଧରେ ନାନା କପୋଳକଳ୍ପିତ କୁତ୍ସା ରଚନା କରିଥିଲେ । ପୁଣି ପରବର୍ତ୍ତୀ ସମୟରେ ରାମମୋହନଙ୍କ ଅନୁଗାମୀ ବୋଲାଉଥିବା ବ୍ରାହ୍ମସମାଜ ଅନ୍ତର୍ଭୁକ୍ତ ବହୁ ବ୍ୟକ୍ତି ନିଜ ମନଗଢ଼ା କଥାକୁ ରାମମୋହନଙ୍କ ମତ ବୋଲି ପ୍ରଚାର କରିଥିଲେ । ମାତ୍ର ସେ ବିଷୟ ଠିକ୍ ପରେ ଆଲୋଚନା କରାଯିବ । ମାନ୍ଦ୍ରାଜର ପଣ୍ଡିତ ଶଙ୍କର ଶାସ୍ତ୍ରୀ ଓ କଲିକତାର ପଣ୍ଡିତ ମୃତ୍ୟୁଞ୍ଜୟ ବିଦ୍ୟାଳଙ୍କାର

କେତେଗୁଡ଼ିଏ ପ୍ରବନ୍ଧ ଜରିଆରେ ଅଭିଯୋଗ କଲେ ଯେ, ଆବହମାନ କାଳରୁ ହିନ୍ଦୁ ସମାଜରେ ପ୍ରଚଳିତ ମୂର୍ତ୍ତିପୂଜାର ବିରୁଦ୍ଧାଚରଣ କରିବା ଦ୍ୱାରା ରାମମୋହନ ହିନ୍ଦୁଧର୍ମର ମୂଳୋତ୍ପାଟନ କରୁଛନ୍ତି । ଏହାଛଡ଼ା ପଣ୍ଡିତ ଶଙ୍କର ଶାସ୍ତ୍ରୀ ବିଷ୍ଣୁ, ଶିବ ପ୍ରଭୃତିଙ୍କ ନାମୋଲ୍ଲେଖ କରି ଦାବି କଲେ ଯେ ପରମେଶ୍ୱର ଦେହଧାରୀ ଅଟନ୍ତି । ସେ ଆଉରି ମଧ୍ୟ କହିଲେ ଯେ, ପାହାଚ ବିନା କୋଠା ଉପରକୁ ଯିବା ଅସମ୍ଭବ । ମୂର୍ତ୍ତିପୂଜା ଓ ସାକାରସାଧନା ଧର୍ମଜଗତର ବିଭିନ୍ନ ପାହାଚ । ଏଗୁଡ଼ିକର ସାହାଯ୍ୟ ବିନା ପରଂବ୍ରହ୍ମଙ୍କୁ ପାଇବା ଅସମ୍ଭବ ।

ଏ ସବୁ ଅଭିଯୋଗର ଉତ୍ତରଦେଇ ରାମମୋହନ କହିଲେ ଯେ––ବେଦାନ୍ତ ହେଉଛି ହିନ୍ଦୁଧର୍ମର ମୂଳ ପ୍ରାମାଣ୍ୟ ଶାସ୍ତ୍ର । ବେଦାନ୍ତମତରେ ପରମେଶ୍ୱରଙ୍କ କାର୍ଯ୍ୟ, କାରଣ, ଆଦି, ଅନ୍ତ, ଲିଙ୍ଗ ବା ବର୍ଣ୍ଣ କିଛି ହେଲେ ନାହିଁ । ତେଣୁ ତାଙ୍କୁ ଦେହଧାରୀ ବା ସସୀମ ରୂପରେ ବର୍ଣ୍ଣନା କଲେ ବାସ୍ତବରେ ତାହା ବେଦାନ୍ତରହିଁ ବିରୁଦ୍ଧାଚରଣ ହେବ । ପୁଣି ଶଙ୍କର ଶାସ୍ତ୍ରୀଙ୍କ ପାହାଚର ଉପମାଟିକୁ ଗ୍ରହଣ କରି ରାମମୋହନ କହିଲେ ଯେ, କୋଠା ଉପରକୁ ଯିବାଟାହିଁ ମୂଳ ଉଦ୍ଦେଶ୍ୟ––ପାହାଚ ତହିଁ ଲାଗି ଏକ ଉପାୟ ମାତ୍ର । ତେଣୁ ଉଦ୍ଦେଶ୍ୟକୁ ଭୁଲିଯାଇ ଉପାୟରେ ଆବଦ୍ଧ ରହିବା ସୁବିବେଚନାର ପରିଚାୟକ ନୁହେ । ଏ ସମ୍ପର୍କରେ ଯେ ପରବର୍ତ୍ତୀ ଭାରତୀୟ ଆଚାର୍ଯ୍ୟମାନଙ୍କର ଉପଦେଶମାନ, ଯଥା––'ଉତ୍ତମ ବ୍ରହ୍ମ-ସଦ୍‌ଭାବ ଧ୍ୟାନ, ଭାବ୍ୟ ମଧ୍ୟମ, ବାହ୍ୟପୂଜା ଅଧମାଧମ' ପ୍ରଭୃତି ଉଲ୍ଲେଖ କରିଥିଲେ । ରାମମୋହନଙ୍କ ସମାଲୋଚକମାନେ ଏହି ସବୁ ଜ୍ଞାନଗର୍ଭ ଉତ୍ତରର କୌଣସି ପ୍ରତ୍ୟୁତ୍ତର ଦେଇ ପାରି ନଥିଲେ ।

(ଖ) **ପାଦ୍ରୀମାନଙ୍କ ସହିତ ବିଚାର**—ରାମମୋହନଙ୍କ ଧର୍ମ-ବିଚାର ଓ ଧର୍ମ-ସଂସ୍କାରର ପରୋକ୍ଷ ପ୍ରେରଣାଦାତା ହେଉଛନ୍ତି ଇଂଲଣ୍ଡରୁ ଆସିଥିବା ଖ୍ରୀଷ୍ଟୀୟ ଧର୍ମଯାଜକ ବା ପାଦ୍ରୀମାନେ । ଅନ୍ୟର ପାଶ୍ଚାତ୍ୟ ଦେଶମାନଙ୍କ ପରି ଇଂରେଜମାନେ ବି ଅନ୍ୟାନ୍ୟ ରାଜ୍ୟ ଗ୍ରାସ କରିବା ସଙ୍ଗେ ସଙ୍ଗେ ପର ଧର୍ମକୁ ଲୋପ କରିଦେବାଲାଗି ବଦ୍ଧ ତତ୍ପର ଥିଲେ । ମାତ୍ର ସ୍ପେନ ବା ପର୍ତ୍ତୁଗାଲ-ବାସିନ୍ଦାଙ୍କ ପରି ବଳ ପ୍ରୟୋଗ ବା ଭୟ ପ୍ରଦର୍ଶନ ନ କରି ଅତି ସୂକ୍ଷ୍ମ ଉପାୟରେ ସେମାନେ ନିଜର ଲକ୍ଷ୍ୟ ହାସଲ କରୁଥିଲେ । ଇଂରେଜମାନଙ୍କ ଚତୁରତା ବିଶ୍ୱବିଖ୍ୟାତ । ଏ ଦେଶକୁ ଦଖଲ କରିସାରି ସେମାନେ ଲକ୍ଷ୍ୟ କଲେ ଯେ ଏ ଦେଶରେ ଉତ୍କଟ ଦାରିଦ୍ର୍ୟ ବ୍ୟାପିରହିଛି, ଆଉ ଏ ଦେଶର ଆଧ୍ୟାତ୍ମିକ ଜଗତ ଅସଂଖ୍ୟ ଭ୍ରଷ୍ଟାଚାର ଆଉ କୁସଂସ୍କାର ଦ୍ୱାରା କଳଙ୍କିତ । ତେଣୁ ଗରିବ ଲୋକମାନଙ୍କୁ ଚାକିରି ବା ନଗଦ ଟଙ୍କାର ଲୋଭ ଦେଖାଇ ଏବଂ ଶିକ୍ଷିତ ଓ ବୁଦ୍ଧିଜୀବୀ ସମ୍ପ୍ରଦାୟକୁ ସେମାନଙ୍କ ଧର୍ମରେ ବ୍ୟାପିଯାଇଥିବା ଭୁଲ ତ୍ରୁଟିଗୁଡ଼ିକୁ ଭିତ୍ତି କରି ହିନ୍ଦୁଧର୍ମର ନିକୃଷ୍ଟତା ବୁଝାଇ ଖ୍ରୀଷ୍ଟାନ କରିବା ପାଇଁ ଇଂଲଣ୍ଡରୁ ଶହ ଶହ ପାଦ୍ରୀ ଆମଦାନି କଲେ । ଫଳରେ ଲାଲବିହାରୀ ଦେ, କୃଷ୍ଣମୋହନ ମୁଖୋପାଧ୍ୟାୟ ପ୍ରମୁଖ ତତ୍କାଳୀନ ବହୁ ବୁଦ୍ଧିଜୀବୀ ଓ ଉଚ୍ଚଶିକ୍ଷିତ ବ୍ୟକ୍ତି ଏହି ପାଦ୍ରୀମାନଙ୍କ କୌଶଳପୂର୍ଣ୍ଣ ପ୍ରଚାର ଯୋଗୁଁ ନିଜ ଧର୍ମକୁ ଭ୍ରାନ୍ତ ଓ ଅସାର ବିଚାରି, ଦଳେ ଦଳେ ଖ୍ରୀଷ୍ଟଧର୍ମ ଗ୍ରହଣ କରିବାକୁ ଲାଗିଲେ । ଏ ସବୁ ଦେଖି ରାମମୋହନ ଆଶଙ୍କା କଲେ ଯେ, ଶୀଘ୍ର ଏହି ଧର୍ମାନ୍ତକରଣର ପ୍ରତିକାର ନ କଲେ ଅଳ୍ପଦିନ ମଧ୍ୟରେ ଭାରତରୁ ହିନ୍ଦୁଧର୍ମ ଓ ସଂସ୍କୃତି ନିଶ୍ଚିହ୍ନ ହୋଇଯିବ । ପାଦ୍ରୀମାନଙ୍କର ଏହି ଅପପ୍ରୟାସ ରୋକିବା ଲାଗି ରାମମୋହନ ଏକ

ଦ୍ୱିମୁଖୀ କାର୍ଯ୍ୟକ୍ରମ ଗ୍ରହଣ କଲେ । ପ୍ରଥମତଃ, ପାଦ୍ରୀମାନଙ୍କ ବକ୍ତବ୍ୟ ଯେ ସତ ନୁହେଁ ତାହା ପ୍ରମାଣ କରିବା ଏବଂ ଦ୍ୱିତୀୟରେ, ତତ୍‌କାଳୀନ ହିନ୍ଦୁ ସମାଜର ଯେଉଁ ଭ୍ରମ ବା ଅଜ୍ଞତାକୁ ଭିତ୍ତିକରି ପାଦ୍ରୀମାନେ ହିନ୍ଦୁଧର୍ମକୁ ନିନ୍ଦୁଛନ୍ତି, ସେଗୁଡ଼ିକୁ ଯଥାଶୀଘ୍ର ସମ୍ଭବ ସୁଧାରିଦେବା ।

ସେ ସମୟରେ କଲିକତା ନିକଟବର୍ତ୍ତୀ ହୁଗୁଳି ଜିଲାର ଶ୍ରୀରାମପୁର ସହରଟି ଖ୍ରୀଷ୍ଟ ଧର୍ମ ପ୍ରଚାରର ପ୍ରଧାନ କେନ୍ଦ୍ର ଥିଲା । ଏଇଠାରେ ପାଦ୍ରୀମାନେ ଏକ ଛାପାଖାନା ସ୍ଥାପନକରି 'ସମାଚାର ଚନ୍ଦ୍ରିକା' ନାମରେ ଗୋଟିଏ ପତ୍ରିକା ପ୍ରକାଶକରି ତହିଁରେ ହିନ୍ଦୁ ଆଚାର-ବିଚାର, ଦେବ-ଦେବୀ ଏବଂ ବେଦ, ବେଦାନ୍ତ, ପୁରାଣ ଇତ୍ୟାଦିର କଟୁ ସମାଲୋଚନାମୂଳକ ପ୍ରବନ୍ଧମାନ ଛାପୁଥିଲେ । ତା'ଛଡ଼ା ଏଇ ଛାପାଖାନାରେ ହିନ୍ଦୁଧର୍ମବିରୋଧୀ ନାନା ଛୋଟ ପୁସ୍ତିକାମାନ ଛାପି ହାଟବଜାରରେ ସାଧାରଣ ଲୋକଙ୍କୁ ପାଦ୍ରୀମାନେ ବିନା ମୂଲ୍ୟରେ ବିତରଣ କରୁଥିଲେ । ରାମମୋହନ ପ୍ରଥମେ 'ସମାଚାର ଚନ୍ଦ୍ରିକା'ରେ ପ୍ରକାଶିତ ବିଭିନ୍ନ ପ୍ରବନ୍ଧର ଭୁଲ ଦର୍ଶାଇ କେତୋଟି ସମାଲୋଚନା ସେହି ପତ୍ରିକାର ସମ୍ପାଦକଙ୍କ ନିକଟକୁ ପ୍ରକାଶ କରିବାଲାଗି ପଠାଇଦେଲେ । ମାତ୍ର ସମ୍ପାଦକ ମହୋଦୟ ସେଗୁଡ଼ିକୁ ନିଜ ପତ୍ରିକାରେ ସ୍ଥାନ ନଦେବାରୁ ରାଜା ସମ୍ପୂର୍ଣ୍ଣରୂପେ ନିଜ ଉଦ୍ୟମରେ 'Brahmanical Magazine' ନାମରେ ଏକ ପତ୍ରିକା ସ୍ଥାପନ କରି ତହିଁରେ ନିଜ ବକ୍ତବ୍ୟ ପ୍ରକାଶ କରିବାକୁ ଲାଗିଲେ ।

ହିନ୍ଦୁଧର୍ମ ବିରୁଦ୍ଧରେ ପାଦ୍ରୀମାନେ ତିନୋଟି ମୁଖ୍ୟ ଅଭିଯୋଗ ଥିଲା । ସେମାନେ କହୁଥିଲେ ଯେ, ପ୍ରଥମତଃ ହିନ୍ଦୁମାନେ

ଏକ ଭଗବାନଙ୍କୁ ସ୍ୱୀକାର ନକରି ବହୁ ଦେବଦେବୀଙ୍କୁ ପୂଜା କରନ୍ତି; ବିଶେଷତଃ ଭଗବାନ ରୂପେ ମନୁଷ୍ୟବିଶେଷ ବା କାଠ-ପଥର ପ୍ରଭୃତିକୁ ପୂଜା କରି ହିନ୍ଦୁମାନେ ଅନନ୍ତ ଈଶ୍ୱରଙ୍କ ମହିମାକୁ କ୍ଷୁଣ୍ଣ ଓ ସୀମାବଦ୍ଧ କରିଛନ୍ତି ଏବଂ ଶେଷରେ ହିନ୍ଦୁଧର୍ମ ଅସ୍ପୃଶ୍ୟତା, ସତୀଦାହ, ନରବଳି, ପଶୁବଳି ପ୍ରଭୃତି ନାନା ଭ୍ରଷ୍ଟାଚାର ଓ କୁସଂସ୍କାର ଦ୍ୱାରା ପରିପୂର୍ଣ୍ଣ । ରାମମୋହନ ଏ ପ୍ରକାର ଅଳୀକ କୁତ୍ସା କ୍ଷାଳନ କରିବା ଲାଗି ପାଦ୍ରୀମାନଙ୍କୁ ଓଲଟା ଆକ୍ରମଣ କରି କହିଲେ ଯେ, ହିନ୍ଦୁଧର୍ମରେ ପୂଜିତ ଅସଂଖ୍ୟ ଦେବଦେବୀ ଅନାଦି ଅନନ୍ତ ପରଂବ୍ରହ୍ମଙ୍କର ବିଭିନ୍ନ ଭାବର ପରିପ୍ରକାଶକ ମାତ୍ର; ବାହାରକୁ ବହୁତ ଜଣାପଡ଼ୁଥିଲେ ସୁଦ୍ଧା ପ୍ରତ୍ୟେକଙ୍କର ମୂଳ ସେହି ବ୍ରହ୍ମସତ୍ତାରେହିଁ ନିହିତ । ବେଦରେ ଇନ୍ଦ୍ର, ଚନ୍ଦ୍ର, ବରୁଣ ପ୍ରଭୃତି ବହୁ ଦେବଦେବୀଙ୍କ ନାମୋଲ୍ଲେଖ ଥିଲେ ସୁଦ୍ଧା ସେମାନଙ୍କୁ ଏକ ଓ ଅବିଚ୍ଛିନ୍ନ ରୂପେ ବନ୍ଦନା କରାଯାଇଛି । ତେଣୁ ହିନ୍ଦୁମାନେ ବାସ୍ତବରେ ଏକେଶ୍ୱରବାଦୀ । ମାତ୍ର ଖ୍ରୀଷ୍ଟାନମାନେ ଭଗବାନଙ୍କୁ 'ପିତା, ପୁତ୍ର, ପବିତ୍ରାତ୍ମା' (**Father, Son, Holy Ghost**) ନାମକ ତିନିଗୋଟି ବିଚ୍ଛିନ୍ନ ରୂପରେ ପୂଜା କରିଥାଆନ୍ତି, ତେଣୁ ସ୍ୱୟଂ ଖ୍ରୀଷ୍ଟାନମାନେହିଁ ଏକେଶ୍ୱରବାଦୀ ନୁହନ୍ତି । ସେମାନେ 'ପିତା' ନାମରେ ସ୍ୱର୍ଗବାସୀ ଈଶ୍ୱରଙ୍କୁ, 'ପୁତ୍ର' ନାମରେ ଯିଶୁରୂପୀ ଈଶ୍ୱରଙ୍କୁ ଏବଂ 'ପବିତ୍ରାତ୍ମା' ନାମରେ ବାଇବେଲବର୍ଣ୍ଣିତ ବାରଜଣ ପଟ୍ଟଶିଷ୍ୟ (**Apostles**) ଙ୍କ ଅନ୍ତର୍ନିହିତ ସ୍ୱର୍ଗୀୟ ଶକ୍ତିରୂପେ ଈଶ୍ୱରଙ୍କୁ ଉପାସନା କରିଥାଆନ୍ତି । ତେଣୁ ହିନ୍ଦୁମାନଙ୍କୁ 'ଏକେଶ୍ୱରବାଦୀ ନୁହନ୍ତି' ବୋଲି କହିବାର ନୈତିକ ଅଧିକାର ସେମାନଙ୍କର ନାହିଁ ।

ପାଦ୍ରୀମାନଙ୍କ ବିରୁଦ୍ଧ ଅଭିଯୋଗ ବିଷୟରେ ରାମମୋହନ କହିଲେ ଯେ, ହିନ୍ଦୁମାନେ ବିଭିନ୍ନ ଅବତାର ବା ବିଗ୍ରହକୁ ଈଶ୍ୱର ନୁହେଁ, ଈଶ୍ୱରଙ୍କ ପ୍ରତୀକ ରୂପେ ପୂଜା କରିଥାଆନ୍ତି । ଏଗୁଡ଼ିକ ସେମାନଙ୍କର ସାଧନମାର୍ଗର ଉପାୟ ମାତ୍ର; ଉଦ୍ଦେଶ୍ୟ ନୁହେଁ । ସମସ୍ତ ହିନ୍ଦୁ ଶାସ୍ତ୍ର ଈଶ୍ୱରଙ୍କୁ ବାକ୍ୟ ମନର ଅତୀତ 'ଅବାଙ୍ମାନସ-ଗୋଚର' ରୂପେ ବର୍ଣ୍ଣନା କରିଛି । ମାତ୍ର ଖ୍ରୀଷ୍ଟାନମାନେ ନର-ଦେହଧାରୀ ଯିଶୁଙ୍କୁ ସାକ୍ଷାତ ଈଶ୍ୱର ରୂପେ ପୂଜା କରି ଈଶ୍ୱରଙ୍କର ଅନନ୍ତତ୍ୱକୁ ନିଜେହିଁ କ୍ଷୁଣ୍ଣ ଓ ସୀମାବଦ୍ଧ କରିଛନ୍ତି । ହିନ୍ଦୁ ଶାସ୍ତ୍ରରେ ଉଲ୍ଲିଖିତ ଈଶ୍ୱରଙ୍କର ମତ୍ସ୍ୟ, ବରାହ ଓ କୂର୍ମରୂପକୁ ବିଦ୍ରୂପ କରି ଜଣେ ପାଦ୍ରୀ 'ସମାଚାର ଚନ୍ଦ୍ରିକା'ରେ ପ୍ରକାଶ କରିଥିବା ପ୍ରବନ୍ଧର ଉତ୍ତର ଦେଇ ରାମମୋହନ କହିଲେ ଯେ, ଖ୍ରୀଷ୍ଟାନମାନଙ୍କ ଦ୍ୱାରା ପୂଜିତ ପବିତ୍ରାତ୍ମା ବା **Holy Ghost** ନାମଧାରୀ ଈଶ୍ୱର କପୋତ ରୂପ ଧରି ଆକାଶରୁ ଅବତୀର୍ଣ୍ଣ ହୋଇଥିବା ବାଇବେଲରେ ବର୍ଣ୍ଣନା କରାଯାଇଛି । ତେଣୁ ହିନ୍ଦୁ ଶାସ୍ତ୍ରର ମତ୍ସ୍ୟ, କୂର୍ମ ବା ବରାହ ଅବତାରକୁ ଖ୍ରୀଷ୍ଟାନମାନେ କେଉଁ ନ୍ୟାୟରେ ବିଦ୍ରୂପ କରି-ପାରିବେ ?

ସତୀଦାହ, ନରବଳି, ପଶୁବଳି, ଅସ୍ପୃଶ୍ୟତା ଇତ୍ୟାଦି କୁସଂସ୍କାର ବିଭିନ୍ନ ସଂସ୍କୃତ ଧର୍ମଶାସ୍ତ୍ରରୁ ବହୁ ଉଦ୍ଧୃତି ଉଲ୍ଲେଖ କରି ରାମମୋହନ ପ୍ରମାଣ କଲେ ଯେ, ସେଗୁଡ଼ିକ ହିନ୍ଦୁ ଧର୍ମ ବା ଆଚାର-ବିଚାରର ଅଂଗୀଭୂତ ନୁହେଁ । ଅଶିକ୍ଷା, କୁଶିକ୍ଷା ଓ ଯଥାର୍ଥ ଶାସ୍ତ୍ରଜ୍ଞାନ ଅଭାବରୁ ଏଗୁଡ଼ିକ ଉତ୍ପନ୍ନ ହୋଇଛନ୍ତି ।

ଖ୍ରୀଷ୍ଟାନ ଧର୍ମଗ୍ରନ୍ଥ ବାଇବେଲ ପ୍ରଥମେ ହିବ୍ରୁ ଭାଷାରେ ଲେଖାଯାଇଥିଲା, କାରଣ ଭଗବାନ ଯିଶୁଖ୍ରୀଷ୍ଟ ସେହି ଭାଷାରେହିଁ

ହଜରତ ବାଣୀ ପ୍ରଚାର କରିଥିଲେ । ପରେ ତାହା ଭାଷାନ୍ତରିତ ହେବା ସମୟରେ ତହିଁରେ ନାନା ଭ୍ରାନ୍ତି ଓ ମିଥ୍ୟା ପ୍ରବେଶ କରିଥିଲା । ହିବ୍ରୁ ଅତି କଠିନ ଭାଷା ହୋଇଥିବା ଯୋଗୁଁ ଅଧିକାଂଶ ପାଦ୍ରୀ ମୂଳ ବାଇବେଲ ପଢ଼ିନଥିଲେ । ସେମାନଙ୍କ ଶାସ୍ତ୍ରଜ୍ଞାନ ସାଂପ୍ରତିକ ଅନୁବାଦରେହିଁ ସୀମିତ ଥିଲା । ମାତ୍ର ରାମମୋହନ ହିବ୍ରୁ ଭାଷା ଶିକ୍ଷା କରି ମୂଳ ବାଇବେଲ ପଢ଼ି ଯୁକ୍ତି ବାଢ଼ିବାରୁ ପାଦ୍ରୀମାନେ ତାଙ୍କ ସଙ୍ଗେ ଯୁକ୍ତି କରିନପାରି ନୀରବ ରହିଲେ ।

(ଗ) **ମୌଲବିମାନଙ୍କ ସହିତ ବିଚାର**—ଖ୍ରୀଷ୍ଟାନ-ମାନଙ୍କ ବ୍ୟତୀତ ମୁସଲମାନମାନଙ୍କର ବି ହିନ୍ଦୁଧର୍ମ ପ୍ରତି ଏକ ଉତ୍କଟ ବିଦ୍ୱେଷ ଭାବ ଥିଲା । ଧର୍ମାନ୍ଧ ମୁସଲମାନ ଧର୍ମଯାଜକ ବା ମୌଲବିମାନେ ହିନ୍ଦୁମାନଙ୍କୁ 'କାଫେର', 'ମୂର୍ତ୍ତି-ଉପାସକ' ଇତ୍ୟାଦି କହି ବିଦ୍ରୂପ କରୁଥିଲେ । ରାମମୋହନ ବାଲ୍ୟକାଳରୁ ପାରସୀ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ ଏବଂ ସେଇ ଭାଷାରେ ମୁସଲମାନ ଧର୍ମଗ୍ରନ୍ଥ କୋରାନ୍ ମଧ୍ୟ ପାଠ କରିଥିଲେ । ମାତ୍ର ପରେ ମୂଳ କୋରାନ୍ ଆରବୀ ଭାଷାରେ ଲେଖା ହୋଇଥିବାର ଜାଣି ସେ ଆରବୀ ଭାଷା ଶିକ୍ଷା କରି, ମୂଳ କୋରାନ୍‌ରେ ବ୍ୟୁତ୍ପତ୍ତି ଲାଭ କଲେ ଏବଂ 'ତହଫତ୍ ଉଲ୍ ମଉଆହିଦ୍ଦୀନ' ନାମରେ ଆରବୀ ଭାଷାରେ ଏକ ପୁସ୍ତିକା ପ୍ରକାଶ କରି ପ୍ରମାଣ କଲେ—କୋରାନ୍‌ରେ କୁହାଯାଇଛି ଯେ, ହଜରତ୍ ମହମ୍ମଦଙ୍କ ପୂର୍ବରୁ ଆସିଥିବା ସମସ୍ତ 'ରସୁଲ୍' ବା 'ପ୍ରେରିତ ପୁରୁଷ' ଏବଂ ତାଙ୍କ ପରେ ଆସୁଥିବା ରସୁଲ୍‌ମାନେ ସମଭାବରେ ସମ୍ମାନନୀୟ ଓ ଗ୍ରହଣୀୟ । 'ମୁସଲମାନ' ଶବ୍ଦର ଅର୍ଥ ହେଲା ବିଶ୍ୱାସୀ । ଏହି ବିଶ୍ୱାସ କେବଳ କୋରାନ୍-ଉଦ୍‌ଗାତା ମହମ୍ମଦଙ୍କଠାରେ ନିବଦ୍ଧ ନୁହେଁ, ତାଙ୍କର ପୂର୍ବବର୍ତ୍ତୀ ତଥା ପରବର୍ତ୍ତୀ

ସମସ୍ତ ପ୍ରେରିତ ପୁରୁଷ ବା 'ହଜରତ୍'ମାନଙ୍କ ପ୍ରତି ଏହା ପ୍ରଯୁଜ୍ୟ । ତେଣୁ ଯେଉଁ ବ୍ୟକ୍ତି ମହମ୍ମଦଙ୍କ ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ମହାପୁରୁଷ ବା ହଜରତଙ୍କୁ ଅସ୍ୱୀକାର ବା ଅସମ୍ମାନ କରେ, ସେ କଦାପି 'ମୁସଲମାନ'-ପଦବାଚ୍ୟ ନୁହେଁ । ହଜରତ୍ ମହମ୍ମଦ ଅବଶ୍ୟ ଆଲ୍ଲାଙ୍କର 'ରସୁଲ୍' ବା ପ୍ରତିନିଧି । ମାତ୍ର ତା ବୋଲି ମହମ୍ମଦଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଅନ୍ୟ ରସୁଲମାନଙ୍କୁ ଅସ୍ୱୀକାର ବା ଅସମ୍ମାନ କରିବାଟା କଦାପି ଇସଲାମ୍ ଧର୍ମ-ସମ୍ମତ ନୁହେଁ । ଏହି ପୁସ୍ତକ ବ୍ୟତୀତ ରାମମୋହନ ଆରବୀ ଭାଷାରେ 'ମନାଜାରତୁଲ୍ ଆଦ୍‌ଆନ' ବା 'ବିବିଧ ଧର୍ମମତର ବିଚାର' ନାମରେ ଏକ ପୁସ୍ତକ ଲେଖି ପ୍ରମାଣ କଲେ ଯେ ପୃଥିବୀର ସବୁ ଧର୍ମ-ସଂସ୍ଥା ଏକ ସର୍ବ-ବ୍ୟାପୀ, ସର୍ବଶକ୍ତିମାନ୍, ଇନ୍ଦ୍ରିୟାତୀତ ଈଶ୍ୱରଙ୍କର ଅସ୍ତିତ୍ୱକୁ ସ୍ୱୀକାର କରନ୍ତି । ରାମମୋହନ ରାୟଙ୍କ ଅକାଟ୍ୟ ତଥ୍ୟ-ସମ୍ବଳିତ ଯୁକ୍ତିର ପ୍ରତିବାଦ ମୌଲବିମାନେ କରି ନପାରି ଶ୍ରଦ୍ଧାରେ ତାଙ୍କୁ 'ଜବରଦସ୍ତ ମୌଲବି' ଆଖ୍ୟା ଦେଇଥିଲେ ।

## ସମାଜ-ସଂସ୍କାର

ପୂର୍ବରୁ କୁହାଯାଇଛି ଯେ, ଅଶିକ୍ଷା ଓ ଅଜ୍ଞତା ଯୋଗୁଁ ହିନ୍ଦୁ ସମାଜରେ ପ୍ରବେଶ କରିଥିବା ଭ୍ରଷ୍ଟାଚାର ଓ କୁସଂସ୍କାରଗୁଡ଼ିକୁ ଭିତ୍ତି କରି ପାଦ୍ରୀ ଓ ମୌଲବିମାନେ ହିନ୍ଦୁଧର୍ମକୁ ନିନ୍ଦା କରୁଥିଲେ । ତେଣୁ ହିନ୍ଦୁଧର୍ମର ଯଥାର୍ଥ ରକ୍ଷାକାରୀ ରାମମୋହନ ହିନ୍ଦୁ ସମାଜରୁ ଏଇ ଅନାଚାରଗୁଡ଼ିକର ଉଚ୍ଛେଦ ଲାଗି ପ୍ରାଣପଣେ ଉଦ୍ୟମ ଚଳାଇଲେ ।

ହଜରତ ବାଣୀ ପ୍ରଚାର କରିଥିଲେ । ପରେ ତାହା ଭାଷାନ୍ତରିତ ହେବା ସମୟରେ ତହିଁରେ ନାନା ଭ୍ରାନ୍ତ ଓ ମିଥ୍ୟା ପ୍ରବେଶ କରିଥିଲା । ହିବ୍ରୁ ଅତି କଠିନ ଭାଷା ହୋଇଥିବା ଯୋଗୁଁ ଅଧିକାଂଶ ପାଦ୍ରୀ ମୂଳ ବାଇବେଲ ପଢ଼ିନଥିଲେ । ସେମାନଙ୍କ ଶାସ୍ତ୍ରଜ୍ଞାନ ସାଂପ୍ରତିକ ଅନୁବାଦରେହିଁ ସୀମିତ ଥିଲା । ମାତ୍ର ରାମମୋହନ ହିବ୍ରୁ ଭାଷା ଶିକ୍ଷା କରି ମୂଳ ବାଇବେଲ ପଢ଼ି ଯୁକ୍ତି ବାଢ଼ିବାରୁ ପାଦ୍ରୀମାନେ ତାଙ୍କ ସଙ୍ଗେ ଯୁକ୍ତି କରିନପାରି ନୀରବ ରହିଲେ ।

(ଗ) **ମୌଲବିମାନଙ୍କ ସହିତ ବିଚାର**—ଖ୍ରୀଷ୍ଟାନ-ମାନଙ୍କ ବ୍ୟତୀତ ମୁସଲମାନମାନଙ୍କର ଦ ହିନ୍ଦୁଧର୍ମ ପ୍ରତି ଏକ ଉତ୍କଟ ବିଦ୍ୱେଷ ଭାବ ଥିଲା । ଧର୍ମାନ୍ଧ ମୁସଲମାନ ଧର୍ମଯାଜକ ବା ମୌଲବିମାନେ ହିନ୍ଦୁମାନଙ୍କୁ 'କାଫେର', 'ମୂର୍ତ୍ତି-ଉପାସକ' ଇତ୍ୟାଦି କହି ବିଦ୍ରୂପ କରୁଥିଲେ । ରାମମୋହନ ବାଲ୍ୟକାଳରୁ ପାରସୀ ଭାଷାରେ ବ୍ୟୁତ୍ପତ୍ତି ଲାଭ କରିଥିଲେ ଏବଂ ସେଇ ଭାଷାରେ ମୁସଲମାନ ଧର୍ମଗ୍ରନ୍ଥ କୋରାନ୍ ମଧ୍ୟ ପାଠ କରିଥିଲେ । ମାତ୍ର ପରେ ମୂଳ କୋରାନ୍ ଆରବୀ ଭାଷାରେ ଲେଖା ହୋଇଥିବାର ଜାଣି ସେ ଆରବୀ ଭାଷା ଶିକ୍ଷା କରି, ମୂଳ କୋରାନ୍‌ରେ ବ୍ୟୁତ୍ପତ୍ତି ଲାଭ କଲେ ଏବଂ 'ତହଫତ୍ ଉଲ୍ ମଓଆହିଦ୍ଦୀନ' ନାମରେ ଆରବୀ ଭାଷାରେ ଏକ ପୁସ୍ତିକା ପ୍ରକାଶ କରି ପ୍ରମାଣ କଲେ—କୋରାନ୍‌ରେ କୁହାଯାଇଛି ଯେ, ହଜରତ୍ ମହମ୍ମଦଙ୍କ ପୂର୍ବରୁ ଆସିଥିବା ସମସ୍ତ 'ରସୁଲ୍' ବା 'ପ୍ରେରିତ ପୁରୁଷ' ଏବଂ ତାଙ୍କ ପରେ ଆସୁଥିବା ରସୁଲ୍‌ମାନେ ସମଭାବରେ ସମ୍ମାନନୀୟ ଓ ଗ୍ରହଣୀୟ । 'ମୁସଲମାନ' ଶବ୍ଦର ଅର୍ଥ ହେଲା ବିଶ୍ୱାସୀ । ଏହି ବିଶ୍ୱାସ କେବଳ କୋରାନ୍-ଉଦ୍‌ଗାତା ମହମ୍ମଦଙ୍କଠାରେ ନିବଦ୍ଧ ନୁହେଁ, ତାଙ୍କର ପୂର୍ବବର୍ତ୍ତୀ ତଥା ପରବର୍ତ୍ତୀ

ସମସ୍ତ ପ୍ରେରିତ ପୁରୁଷ ବା 'ହଜରତ୍'ମାନଙ୍କ ପ୍ରତି ଏହା ପ୍ରଯୁଜ୍ୟ । ତେଣୁ ଯେଉଁ ବ୍ୟକ୍ତି ମହମ୍ମଦଙ୍କ ପୂର୍ବବର୍ତ୍ତୀ ବା ପରବର୍ତ୍ତୀ କୌଣସି ମହାପୁରୁଷ ବା ହଜରତ୍ଙ୍କୁ ଅସ୍ୱୀକାର ବା ଅସମ୍ମାନ କରେ, ସେ କଦାପି 'ମୁସଲମାନ'-ପଦବାଚ୍ୟ ନୁହେଁ । ହଜରତ୍ ମହମ୍ମଦ ଅବଶ୍ୟ ଆଲ୍ଲାଙ୍କର 'ରସୁଲ୍' ବା ପ୍ରତିନିଧି । ମାତ୍ର ତା ବୋଲି ମହମ୍ମଦଙ୍କ ପୂର୍ବବର୍ତ୍ତୀ ଓ ପରବର୍ତ୍ତୀ ଅନ୍ୟ ରସୁଲମାନଙ୍କୁ ଅସ୍ୱୀକାର ବା ଅସମ୍ମାନ କରିବାଟା କଦାପି ଇସଲାମ୍ ଧର୍ମ-ସମ୍ମତ ନୁହେଁ । ଏହି ପୁସ୍ତକ ବ୍ୟତୀତ ରାମମୋହନ ଆରବୀ ଭାଷାରେ 'ମନାଜାରତୁଲ୍ ଆଦିଆନ' ବା 'ବିବିଧ ଧର୍ମମତର ବିଚାର' ନାମରେ ଏକ ପୁସ୍ତକ ଲେଖି ପ୍ରମାଣ କଲେ ଯେ ପୃଥିବୀର ସବୁ ଧର୍ମ-ସଂସ୍ଥା ଏକ ସର୍ବ-ବ୍ୟାପୀ, ସର୍ବଶକ୍ତିମାନ୍, ଇନ୍ଦ୍ରିୟାତୀତ ଈଶ୍ୱରଙ୍କର ଅସ୍ତିତ୍ୱକୁ ସ୍ୱୀକାର କରନ୍ତି । ରାମମୋହନ ରାୟଙ୍କ ଅକାଟ୍ୟ ତଥ୍ୟ-ସମ୍ବଳିତ ଯୁକ୍ତିର ପ୍ରତିବାଦ ମୌଲବିମାନେ କରି ନପାରି ଶ୍ରଦ୍ଧାରେ ତାଙ୍କୁ 'ଜବରଦସ୍ତ ମୌଲବି' ଆଖ୍ୟା ଦେଇଥିଲେ ।

## ସମାଜ-ସଂସ୍କାର

ପୂର୍ବରୁ କୁହାଯାଇଛି ଯେ, ଅଶିକ୍ଷା ଓ ଅଜ୍ଞତା ଯୋଗୁଁ ହିନ୍ଦୁ ସମାଜରେ ପ୍ରବେଶ କରିଥିବା ଭ୍ରଷ୍ଟାଚାର ଓ କୁସଂସ୍କାରଗୁଡ଼ିକୁ ଭିତ୍ତି କରି ପାଦ୍ରୀ ଓ ମୌଲବିମାନେ ହିନ୍ଦୁଧର୍ମକୁ ନିନ୍ଦା କରୁଥିଲେ । ତେଣୁ ହିନ୍ଦୁଧର୍ମର ଯଥାର୍ଥ ରକ୍ଷାକାରୀ ରାମମୋହନ ହିନ୍ଦୁ ସମାଜରୁ ଏଇ ଅନାଚାରଗୁଡ଼ିକର ଉଚ୍ଛେଦ ଲାଗି ପ୍ରାଣପଣେ ଉଦ୍ୟମ ଚଳାଇଲେ ।

ଏଇ କୁପ୍ରଥାଗୁଡ଼ିକ ଭିତରୁ ସବୁଠୁ ଭୟଙ୍କର ଓ ଅମାନୁଷିକ ଥିଲା ସତୀଦାହ ପ୍ରଥା । ଇତିହାସ କହେ ଯେ, ରାଜପୁତ ରମଣୀମାନେ ନିଜ ଧର୍ମ ଓ ସମ୍ମାନ ରକ୍ଷାଲାଗି, ରଣକ୍ଷେତ୍ରରେ ନିହତ ନିଜ ନିଜ ସ୍ୱାମୀଙ୍କ ଚିତାଗ୍ନିରେ ଆତ୍ମବଳି ଦେଉଥିଲେ । ମାତ୍ର ଏହା ସେମାନେ ସ୍ୱତଃପ୍ରବୃତ୍ତ ହୋଇ କରୁଥିଲେ । ଏହା ପଛରେ କୌଣସି ବାଧ୍ୟବାଧକତା ବା ବଳାତ୍କାର ନଥିଲା । କିନ୍ତୁ ଅଷ୍ଟାଦଶ ଶତାବ୍ଦୀର ଭାରତୀୟ ହିନ୍ଦୁ ସମାଜ ସତୀଦାହକୁ ଏକ ଧର୍ମାନୁମୋଦିତ ଓ ଅବଶ୍ୟ-କରଣୀୟ ପ୍ରଥାରେ ପରିଣତ କରି ହିନ୍ଦୁ ବିଧବା ନିଜ ସ୍ୱାମୀର ଚିତାଗ୍ନିରେ ଆତ୍ମ-ବିସର୍ଜନ ଦେବାକୁ ବାଧ୍ୟ ବୋଲି ବିଧାନଦେଲେ । ଫଳରେ ଧର୍ମହାନି ଆଶଙ୍କାରେ ବା ଲୋକଲଜ୍ଜା ଭୟରେ ବହୁ ବିଧବା ସ୍ୱାମୀଙ୍କ ଚିତାଗ୍ନିରେ ଆତ୍ମହତ୍ୟା ଲାଗି ସମ୍ମତ ହେଲେ । ମାତ୍ର ଏପରି ଅସ୍ୱାଭାବିକ ଓ ବୀଭତ୍ସ ଆତ୍ମହତ୍ୟା ପସନ୍ଦ କରୁ ନଥିବା ବିଧବାମାନଙ୍କ କପାଳରେ ଘୋରତର ଦୁଃଖ ମିଳୁଥିଲା । ସମାଜପତିମାନଙ୍କ ନିର୍ଦ୍ଦେଶରେ ସେମାନଙ୍କର ଆତ୍ମୀୟ-ସ୍ୱଜନ ସେଇ ଅସମ୍ମତ ବିଧବାମାନଙ୍କ ହାତ ପାଦ ବାନ୍ଧି ସେମାନଙ୍କୁ ଚିତାନିଆଁରେ ଫୋପାଡ଼ିଦେଉଥିଲେ ।

ବାଳକ ବୟସରେ ରାମମୋହନ ସ୍ୱ-ଚକ୍ଷୁରେ କେତୋଟି ସତୀଦାହ ଦେଖିଥିଲେ ଏବଂ ଏଇ ଅଳ୍ପ ବୟସରେହିଁ ସେଇ ପ୍ରଥାର ବର୍ବରତା ତାଙ୍କ ମନରେ ଘୋର ପ୍ରତିକ୍ରିୟା ସୃଷ୍ଟିକରିଥିଲା । ଭାରତର ଶାସନଗାଦି ଦଖଲ କରିଥିବା ଇଂରେଜମାନେ ବି ସତୀଦାହକୁ ସମର୍ଥନ ବା ପସନ୍ଦ କରୁନଥିଲେ । ମାତ୍ର ସେ ସମୟରେ ସେମାନେ ଭାରତୀୟ ହିନ୍ଦୁସମାଜର ରୀତିନୀତି ଭଲଭାବରେ ଜାଣି ନଥିବା ଯୋଗୁଁ, ଏହାକୁ ହିନ୍ଦୁଧର୍ମର ଏକ ବିଧାନ ମନେକରି ତା

ବିରୁଦ୍ଧରେ କୌଣସି ପଦକ୍ଷେପ ଗ୍ରହଣ କରି ନଥିଲେ । ଏହି ସମୟରେ ରାମମୋହନ ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ଆମହର୍ଷ୍ଟଙ୍କୁ ଗୋଟିଏ ଦରଖାସ୍ତ ଜରିଆରେ ସତୀଦାହ ହିନ୍ଦୁ ଶାସ୍ତ୍ର-ସମ୍ମତ ନୁହେଁ ବୋଲି ଜଣାଇ ତାହା ବନ୍ଦ କରିବାକୁ ଅନୁରୋଧ କଲେ । ମାତ୍ର ହଠାତ୍ ଏପରି ଗୁରୁତର ପଦକ୍ଷେପ ନେବାର ସାହସ ନଥିବାରୁ, ବଡ଼ଲାଟ କଲିକତାର ନିଜାମତ ଅଦାଲତର ଜଜ୍‌ଙ୍କୁ ଏ ବିଷୟ ଅନୁସନ୍ଧାନ କରିବା ଲାଗି ନିର୍ଦ୍ଦେଶ ଦେଲେ । ଫଳରେ ଅଦାଲତ ଘନଶ୍ୟାମ ଭଟ୍ଟାଚାର୍ଯ୍ୟ ନାମକ ଜଣେ ଶାସ୍ତ୍ରଜ୍ଞ ବ୍ରାହ୍ମଣଙ୍କୁ ଡକାଇ ସତୀଦାହ ବିଷୟରେ କେତେଗୁଡ଼ିଏ ପ୍ରଶ୍ନ ପଚାରିଲେ । ତହିଁ ମଧ୍ୟରୁ ଗୋଟିଏ ପ୍ରଶ୍ନର ଉତ୍ତରରେ ଭଟ୍ଟାଚାର୍ଯ୍ୟ ମହାଶୟ ସ୍ପଷ୍ଟ ଭାବରେ କହିଥିଲେ—"ବିଧବାକୁ ପତି ସହିତ ବାନ୍ଧି ଦାହ କରିବା ଶାସ୍ତ୍ର-ବିରୁଦ୍ଧ ।" ଏ ପ୍ରକାର ଆଲୋଚନା ପରେ ୧୮୧୭ ମସିହାରେ ଭାରତ ସରକାର ଆଦେଶ ଦେଲେ—କୌଣସି ବିଧବା ସ୍ୱାମୀଙ୍କ ଚିତାରେ ଆତ୍ମାହୁତି ଦେବାକୁ ଚାହିଁଲେ, ତାଙ୍କୁ ପ୍ରଥମେ ସ୍ଥାନୀୟ ମାଜିଷ୍ଟ୍ରେଟଙ୍କଠାରୁ ତା ସକାଶେ ଅନୁମତି ନେବାକୁ ପଡ଼ିବ । ଏହି ଆଦେଶ ଜାରି ହେବା ମାତ୍ରେ ରକ୍ଷଣଶୀଳ ସଂପ୍ରଦାୟ ମଧ୍ୟରେ ହୁଲୁସ୍ଥୂଲ ପଡ଼ିଲା । ବହୁ ପ୍ରାଚୀନପନ୍ଥୀ ବ୍ୟକ୍ତି ଏହି ଆଇନକୁ ରଦ୍ଦ କରିବା ଲାଗି ବଡ଼ଲାଟଙ୍କ ନିକଟକୁ ଆବେଦନ-ପତ୍ରମାନ ପଠାଇଲେ । ପୁଣି ରାମମୋହନ ଏହି ଆଇନ ପ୍ରଣୟନ ଲାଗି ସରକାରଙ୍କୁ ଅଭିନନ୍ଦିତ କରିବା ସଙ୍ଗେ ସଙ୍ଗେ ସତୀଦାହକୁ ପୂରାପୂରି ନିଷିଦ୍ଧ କରିବା ନିମନ୍ତେ ଦାବି ଜଣାଇଲେ । ଯାହାହେଉ, ପୂର୍ବୋକ୍ତ ଆଇନ କାଏମ ରହିଲା ଏବଂ ତା ଫଳରେ ସତୀଦାହ କେତେକ ପରିମାଣରେ କମିଗଲା ।

୧୮୨୮ ମସିହାରେ ଲର୍ଡ଼ ଉଇଲିୟମ ବେଣ୍ଟିକ ଭାରତର ବଡ଼ଲାଟ ରୂପେ ନିଯୁକ୍ତ ପାଇଲେ । ଲର୍ଡ଼ ବେଣ୍ଟିକ ଜଣେ ଉଚ୍ଚକୋଟୀର

ବିବେକୀ, ବିଶ୍ୱରଚିନ୍ତ ଓ ସହୃଦୟ ବ୍ୟକ୍ତି ଥିବାର ଜାଣି ସତୀଦାହକୁ ନିଷିଦ୍ଧ କରିବାର ଦାବି ରାମମୋହନ ତାଙ୍କ ଆଗରେ ପେସ୍ କଲେ । ସହମରଣ ସମ୍ପର୍କରେ ୧୮୨୦ ଖ୍ରୀଷ୍ଟାବ୍ଦରେ ରାମମୋହନଙ୍କ ଲେଖା ଏକ ପୁସ୍ତକ ପ୍ରକାଶିତ ହେଲା । ସେଥିରେ ରାଜା ଲେଖିଥିଲେ— ସହମରଣ କାମ୍ୟକର୍ମ; ତେଣୁ ଶାସ୍ତ୍ରର ପ୍ରକୃତ ତାତ୍ପର୍ଯ୍ୟ ଅନୁସାରେ ଏହା ଅସଙ୍ଗତ । ସହମରଣ ଅପେକ୍ଷା ବ୍ରହ୍ମଚର୍ଯ୍ୟ ଶ୍ରେଷ୍ଠତର ।

ଲର୍ଡ ବେଣ୍ଟିଙ୍କଙ୍କ ଇଚ୍ଛା ଅନୁସାରେ ରାମମୋହନ ସତୀଦାହର ସମର୍ଥକମାନଙ୍କ ସଙ୍ଗେ ଏକ ଶାସ୍ତ୍ରୀୟ ବିଚାର ଓ ତର୍କରେ ପ୍ରବୃତ୍ତ ହେଲେ । ବାଦ-ବିବାଦର ଯୁକ୍ତି ଚାଲିଲା; ମାତ୍ର ରକ୍ଷଣଶୀଳ ପଣ୍ଡିତ-ମାନେ ଆପ୍ରାଣ ଚେଷ୍ଟା କରି ସୁଦ୍ଧା ରାମମୋହନଙ୍କ ଯୁକ୍ତିଗୁଡ଼ିକ ଖଣ୍ଡନ କରିପାରିଲେ ନାହିଁ । ଶାସ୍ତ୍ର-ବାକ୍ୟ ଉଦ୍ଧାରକରି ରାମମୋହନ ପ୍ରମାଣିତ କଲେ ଯେ, ପତ୍ନୀ ପତିଙ୍କର ଅନୁଗାମୀ ହେବା ଅର୍ଥ ଶାରୀରିକ ଅନୁଗମନ ନୁହେଁ । ଏହାର ଅର୍ଥ ପତ୍ନୀ ଆଜୀବନ ପତିଙ୍କଠାରେ ଅନୁରକ୍ତ ରହିବେ । ସହମରଣ ଅର୍ଥ ଦୈହିକ ମରଣ ନୁହେଁ, ପତିଙ୍କ ଦେହାନ୍ତ ସଙ୍ଗେ ସଙ୍ଗେ ପତ୍ନୀଙ୍କ-ଠାରେ ଥିବା କାମ-କ୍ରୋଧାଦି ରିପୁଗୁଡ଼ିକର ବିଲୋପ ହିଁ ଯଥାର୍ଥ ସହମରଣ । ଏ ଦୃଷ୍ଟିରୁ ଚିତାନଳରେ ଆତ୍ମାହୁତି ଦେବା ଅପେକ୍ଷା ବ୍ରହ୍ମଚର୍ଯ୍ୟ ପାଳନ କରିବା ବହୁଗୁଣେ ଶ୍ରେୟସ୍କର । ପୁଣି ସମସ୍ତ ଭାରତୀୟ ଶାସ୍ତ୍ର ଏକସ୍ୱରରେ ଆତ୍ମହତ୍ୟାକୁ ମହାପାପ ବୋଲି ନିନ୍ଦିତ କରିଛନ୍ତି । ତେଣୁ ସ୍ୱେଚ୍ଛାରେ ହେଉ ବା ଅନ୍ୟର ପ୍ରରୋଚନାରେ ହେଉ, ଆତ୍ମହତ୍ୟା କରିବା କଦାପି ବିଧେୟ ନୁହେଁ ।

ଏହିସବୁ ଶାସ୍ତ୍ରୀୟ ତର୍କ ବ୍ୟତୀତ ରାମମୋହନ ଇଂରେଜ

ସରକାରଙ୍କୁ ସ୍ପଷ୍ଟଭାବରେ ବୁଝାଇ ଦେଲେ ଯେ, ଅଧିକାଂଶ କ୍ଷେତ୍ରରେ ସମ୍ପତ୍ତି ଲୋଭରେ ବିଧବାର ଆତ୍ମୀୟ-ସ୍ୱଜନ ତାର ମୃତ୍ୟୁ କାମନା କରିଥାଆନ୍ତି । ତେଣୁ ଯଥାଶୀଘ୍ର ସମ୍ଭବ ଏ କୁପ୍ରଥାକୁ ଉଚ୍ଛେଦ କରିବା ଆବଶ୍ୟକ । ଶେଷକୁ ୧୮୨୯ ମସିହାର ଡ଼ିସେମ୍ବର ୪ ତାରିଖଠାରୁ ଭାରତସାରା 'ସତୀ-ଦାହ ନିବାରଣ' ଆଇନ ବିଧିବଦ୍ଧ ହେଲା । ଦଣ୍ଡଭୟରେ ନିଜର ବିଧବା ଆତ୍ମୀୟମାନଙ୍କୁ ଜ୍ୱଳନ୍ତ ଚିତାରେ ପୋଡ଼ି ନପାରି ରକ୍ଷଣଶୀଳ ଦଳ ରାମମୋହନଙ୍କ ବିରୁଦ୍ଧରେ କ୍ରୋଧରେ ଖଡ଼୍‌ଗହସ୍ତ ହୋଇଗଲେ । ନିଜ ସମର୍ଥକ ଧନୀ ବ୍ୟକ୍ତିମାନଙ୍କ ଆର୍ଥିକ ଆନୁକୂଲ୍ୟରେ ଏହି ଆଇନକୁ ରଦ୍ଦ କରିବା ଲାଗି ସେମାନେ ଇଂଲଣ୍ଡର ସର୍ବୋଚ୍ଚ ଅଦାଲତ 'ପ୍ରିଭି କାଉନ୍‌ସିଲ୍'ରେ ଏକ ଅପିଲ୍ ମଧ୍ୟ ଦାଏରକଲେ ।

ସତୀଦାହ ବ୍ୟତୀତ ରାମମୋହନ 'ବହୁ ବିବାହ', 'ବାଲ୍ୟ-ବିବାହ' ଓ 'ସମ୍ପତ୍ତିରେ ସ୍ତ୍ରୀମାନଙ୍କ ଅଧିକାର' ବିଷୟରେ ମଧ୍ୟ ଆନ୍ଦୋଳନ ଆରମ୍ଭ କରିଥିଲେ । ବହୁ-ବିବାହ ସମ୍ବନ୍ଧରେ 'ମନୁ ସଂହିତା', 'ପରାଶର ସଂହିତା' ପ୍ରଭୃତି ଶାସ୍ତ୍ରଗୁଡ଼ିକରୁ ନାନା ବିଧାନର ଅବତାରଣା କରି ରାମମୋହନ ପ୍ରତିପନ୍ନ କଲେ ଯେ, କେତେକ ନିର୍ଦ୍ଦିଷ୍ଟ କାରଣ ବ୍ୟତୀତ ଏକ ସ୍ତ୍ରୀ ଜୀବିତ ଥାଉ ଥାଉ ସ୍ୱାମୀ ପକ୍ଷରେ ଦ୍ୱିତୀୟ ସ୍ତ୍ରୀ ଗ୍ରହଣ ନିଷିଦ୍ଧ । ତେଣୁ ସରକାରଙ୍କଠାରେ ସେ ଦାବି ଜଣାଇ କହିଲେ—"ଏକ ସ୍ତ୍ରୀ ଜୀବିତ ଥାଉ ଥାଉ ସ୍ୱାମୀ ପୁଣି ବିବାହ କରିବାକୁ ଚାହିଁଲେ, ପ୍ରଥମେ ତାଙ୍କୁ କୌଣସି ମାଜିଷ୍ଟ୍ରେଟଙ୍କ ଆଗରେ ଉପସ୍ଥିତ ହୋଇ ପ୍ରମାଣ କରିବାକୁ ପଡ଼ିବ ଯେ, ସେ ଶାସ୍ତ୍ର-ନିର୍ଦ୍ଦିଷ୍ଟ କୌଣସି କାରଣ ଲାଗି ଦ୍ୱିତୀୟବାର ବିବାହ କରୁଛନ୍ତି ।" ରାମମୋହନ କହିଥିଲେ ଯେ, ଏପ୍ରକାର ଆଇନ ପ୍ରଣୀତ ହେଲେ

ନାରୀ-ନିଗ୍ରହ ହ୍ରାସ ପାଇବା ସଙ୍ଗେ ସଙ୍ଗେ ସ୍ତ୍ରୀ ଆତ୍ମହତ୍ୟାର ସଂଖ୍ୟା ମଧ୍ୟ ବହୁ ପରିମାଣରେ କମିଯିବ ।

'ବାଲ୍ୟ-ବିବାହ' ବିଷୟରେ ମଧ୍ୟ ରାମମୋହନ ଶାସ୍ତ୍ର-ବାକ୍ୟ ଉଦ୍ଧାର କରି ଦର୍ଶାଇଲେ ଯେ, କନ୍ୟା ନିଜ ପତିକୁ ବରଣ କରିବା ବାଞ୍ଛନୀୟ । ଅପ୍ରାପ୍ତବୟସ୍କା କନ୍ୟା ପକ୍ଷରେ ପତି ନିର୍ବାଚନ ସମ୍ଭବ ନୁହେଁ ଏବଂ ଭାରତୀୟ ନାରୀମାନଙ୍କର ଆଦର୍ଶସ୍ଥାନୀୟ ସୀତା, ସାବିତ୍ରୀ, ଦମୟନ୍ତୀ ପ୍ରଭୃତି କେହି ଅପ୍ରାପ୍ତବୟସରେ ବିବାହ କରିନଥିଲେ । ତେଣୁ ବିବାହ କରିବା ପାଇଁ ପୁଅ ଏବଂ ଝିଅମାନଙ୍କ ଲାଗି ଏକ ସର୍ବନିମ୍ନ ବୟସ ଆଇନ ଅନୁସାରେ ଧାର୍ଯ୍ୟ କରାଯିବା ବାଞ୍ଛନୀୟ ।

ସେ ସମୟରେ କୌଣସି ବ୍ୟକ୍ତି ମରିଗଲେ ତାର ବିଧବାକୁ, ନିଃସନ୍ତାନ ହୋଇଥିଲେ, ନିଜ ସ୍ୱାମୀଙ୍କ ପୁରୁଷ ଆତ୍ମୀୟମାନଙ୍କ ଅନୁଗ୍ରହ ଅଥବା ନିଜ ପୁଅ ବୋହୂଙ୍କ ଦୟା ଉପରେ ନିର୍ଭର କରି ଚଳିବାକୁ ପଡ଼ୁଥିଲା । ଆତ୍ମୀୟମାନେ ତ ସହଜେ ଅର୍ଥଲୋଭୀ; ପୁଣି ଅନେକ ପୁଅ ବି ବିବାହ ପରେ ସ୍ତ୍ରୀବାକ୍ୟକୁ ଶାସ୍ତ୍ରବାକ୍ୟ ବୋଲି ବିଚାରନ୍ତି । ତେଣୁ ଅଧିକାଂଶ ବିଧବା ଜୀବନର ଶେଷଦିନ ପର୍ଯ୍ୟନ୍ତ ନିଜ ସ୍ୱାମୀଗୃହରେ ଦାସୀଠାରୁ ହୀନ ଅବସ୍ଥାରେ ରହି ନାନା ଲାଞ୍ଛନା ଗଞ୍ଜଣା ସହ୍ୟ କରୁଥିଲେ । ଏସବୁ ଦେଖି ମାନବପ୍ରେମୀ ରାମମୋହନ ସରକାରଙ୍କଠାରେ ଦାବି କଲେ ଯେ, କୌଣସି ବ୍ୟକ୍ତିର ଦେହାନ୍ତ ପରେ ତାର ବିଧବା ବଞ୍ଚିଥିବାଯାଏ ନିଜ ସ୍ୱାମୀଙ୍କ ସମ୍ପତ୍ତିରୁ ଯେପରି ଭରଣପୋଷଣ ପାଇପାରିବ, ତା ସକାଶେ ଏକ ଆଇନ ପ୍ରଣୟନ କରାଯିବା ବାଞ୍ଛନୀୟ ।

ଦୁଃଖର ବିଷୟ ରାମମୋହନଙ୍କର ଏହି ମହତ୍ ଉଦ୍ୟମ-

ଗୁଡ଼ିକ ସେ ସମୟରେ ସଫଳ ହୋଇ ପାରି ନ ଥିଲା । ଏହାର ଅନ୍ୟତମ ପ୍ରଧାନ କାରଣ ଲର୍ଡ଼ ବେଣ୍ଟିକଙ୍କ ଦ୍ୱାରା ପ୍ରଣୀତ ସତୀଦାହ-ନିବାରଣ ଆଇନ । ସେ ସମୟର ଅଧିକାଂଶ ହିନ୍ଦୁ ରକ୍ଷଣଶୀଳ ଥିଲେ । ଏହି ଆଇନ ପ୍ରଣୀତ ହେବା ଯୋଗେ ସେମାନେ ଦେଶସାରା ଉନ୍ମୂଳ ଆନ୍ଦୋଳନ ଚଳାଇ ଶେଷକୁ ପ୍ରିଭି କାଉନସିଲ୍‌ର ମଧ୍ୟ ଦ୍ୱାରସ୍ଥ ହୋଇଥିଲେ । ଫଳରେ ତତ୍କାଳୀନ ଇଂରେଜ ସରକାର ପ୍ରବଳତର ବିକ୍ଷୋଭର ଆଶଙ୍କା କରି ଆଉ ଏ ଧରଣର ସଂସ୍କାର-ମୂଳକ ଆଇନ ପ୍ରଣୟନ କରିବାଲାଗି ସାହସ କରିପାରିନଥିଲେ ।

କହିବା ବାହୁଲ୍ୟ, ଆଜି ଆଇନ ବଳରେ ଆମ ଦେଶରୁ ବହୁ-ବିବାହ, ବାଲ୍ୟ-ବିବାହ, ଜାତିଭେଦ ପ୍ରଭୃତି ଅନାଚାରଗୁଡ଼ିକର ଉଚ୍ଛେଦ ଏବଂ ମୃତ ପିତା ବା ସ୍ୱାମୀଙ୍କ ସମ୍ପତ୍ତିରେ କୁମାରୀ କନ୍ୟା ବା ବିଧବାର ଅଧିକାର ଲାଭ ମୂଳରେ ନିହିତ ରହିଛି ଦୁଇ ଶତାବ୍ଦୀ ପୂର୍ବର ସେହି ତମସାଚ୍ଛନ୍ନ ଯୁଗରେ ରାମମୋହନଙ୍କର ବଳିଷ୍ଠ ଉଦ୍ୟମ ।

## ଶିକ୍ଷାବିସ୍ତାର

୧୭୫୭ ଖ୍ରୀଷ୍ଟାବ୍ଦରେ ଇଷ୍ଟଇଣ୍ଡିଆ କମ୍ପାନୀ ଏ ଦେଶରେ ଶାସନ କରଗତ କରିବା ସମୟରେ ଭାରତର ରାଜଭାଷା ଥିଲା ପାର୍ସୀ । ପାର୍ସୀଭାଷା ଉପରେ ଏହି ଇଂରେଜ ବଣିକମାନଙ୍କର କେତେକ ପରିମାଣରେ ଦଖଲ ଥିବା ଯୋଗୁଁ ସେମାନେ ଶାସକ

ହେବା ପରେ ମଧ୍ୟ ବହୁ ବର୍ଷଯାଏ ପାର୍ସୀକୁ ରାଜଭାଷାର ମର୍ଯ୍ୟାଦା ଦେଇଥିଲେ । ସେ ସମୟରେ ସରକାରୀ ଚାକିରି ପାଇବା ସକାଶେ ପାର୍ସୀ ଭାଷାରେ ଜ୍ଞାନ ଅତ୍ୟାବଶ୍ୟକ ଥିଲା । ପାର୍ସୀଶିକ୍ଷା ଲାଗି ଦେଶସାରା ପ୍ରତିଷ୍ଠିତ ହୋଇଥିଲା ବହୁ ସଂଖ୍ୟକ 'ମାଦ୍ରାସା' ।

ପୁଣି ସେ ସମୟରେ ହିନ୍ଦୁ ସମାଜ ସଂସ୍କୃତକୁ ଶିକ୍ଷାର ଚରମ ବୋଲି ବିଚାରୁଥିଲେ । ସଂସ୍କୃତ ଶିକ୍ଷା ଦେବାଲାଗି ସେ ସମୟରେ ପ୍ରାୟ ପ୍ରତି ଗାଁରେ ଗୋଟିଏ ଲେଖାଁ 'ଟୋଲ' ପ୍ରତିଷ୍ଠିତ ହୋଇଥିଲା । ଏଇ ଟୋଲଗୁଡ଼ିକରେ ଶିକ୍ଷା ଦେଉଥିଲେ ଜଣେ ଲେଖାଏଁ ବ୍ରାହ୍ମଣ ପଣ୍ଡିତ । ଏଇ ଟୋଲଗୁଡ଼ିକର ପାଠ୍ୟ ତାଲିକାରେ ଥିଲା ବ୍ୟାକରଣ, ନ୍ୟାୟ, ମୀମାଂସା, ଅଳଙ୍କାର ଏବଂ ଆୟୁର୍ବେଦ । ସେ ସମୟର ରକ୍ଷଣଶୀଳମାନେ ସଂସ୍କୃତ ବ୍ୟତୀତ ଅନ୍ୟ ଭାଷା ଶିକ୍ଷା, ଏପରିକି ଅନ୍ୟ ଭାଷା ମାଧ୍ୟମରେ ଶିକ୍ଷାକୁ ମଧ୍ୟ ନିତାନ୍ତ ହେୟ ଓ ଅବାଞ୍ଛନୀୟ ବିଚାରୁଥିଲେ ।

ଊନବିଂଶ ଶତାବ୍ଦୀ ମଣିଷର ଶିକ୍ଷା ଓ ଜ୍ଞାନରାଜ୍ୟରେ ଏକ ନୂତନ ଯୁଗର ସୂତ୍ରପାତ କଲା । ମଧ୍ୟଯୁଗର ଅନ୍ଧବିଶ୍ବାସ, ରକ୍ଷଣଶୀଳତା ଏବଂ ଗତାନୁଗତିକତାକୁ ବିସର୍ଜନଦେଇ ଏଇ ସମୟରେ ଆତ୍ମପ୍ରକାଶ କଲା ଏକ ଯୁକ୍ତିରସାଣିତ ବୈଜ୍ଞାନିକ ଦୃଷ୍ଟିକୋଣ । ରସାୟନ, ପଦାର୍ଥବିଦ୍ୟା, ଚିକିତ୍ସା-ଶାସ୍ତ୍ର ପ୍ରଭୃତି କ୍ଷେତ୍ରରେ ନାନା ବୈପ୍ଳବିକ ଓ ଯୁଗାନ୍ତକାରୀ ଆବିଷ୍କାର ଯୋଗୁଁ ଶିକ୍ଷିତ ସମାଜର ଦୃଷ୍ଟିକୋଣ ବହୁପରିମାଣରେ ବଦଳିଗଲା । ମାତ୍ର ଏଇସବୁ ନୂତନ ଜ୍ଞାନ ସହିତ ପରିଚିତ ହେବାଲାଗି ଭାରତୀୟମାନଙ୍କ ପକ୍ଷରେ ଏକମାତ୍ର ମାଧ୍ୟମ ଥିଲା ଇଂରାଜୀ ଭାଷା । ମାତ୍ର ଭାରତ-ଶାସକ ଇଷ୍ଟ ଇଣ୍ଡିଆ କମ୍ପାନୀର ପ୍ରଧାନ ଉଦ୍ଦେଶ୍ୟ ଥିଲା ନିଜ ଅର୍ଥପ୍ରାପ୍ତିର

ଅଭିବୃଦ୍ଧି । ଭାରତୀୟମାନଙ୍କ ଉନ୍ନତି ଥିଲା ସେମାନଙ୍କ ଦୃଷ୍ଟିରେ ନିତାନ୍ତ ଗୌଣ । ତେଣୁ ଏ ଦେଶର ଲୋକଙ୍କୁ ଆଧୁନିକ ଜ୍ଞାନରେ ଉନ୍ନତତର ପ୍ରଣାଳୀରେ ଶିକ୍ଷାଦେବା ସକାଶେ ସେମାନେ କୌଣସି ଉଦ୍ୟମ କରିନଥିଲେ । ମାତ୍ର ରାମମୋହନଙ୍କ ପରି ଦୂରଦ୍ରଷ୍ଟା, ଜ୍ଞାନ-ତପସ୍ୱୀ ହୃଦ୍‌ବୋଧ କରିଥିଲେ ଯେ, ଇଂରାଜୀ ଶିକ୍ଷା ବ୍ୟତୀତ ଭାରତୀୟମାନଙ୍କ ପକ୍ଷରେ ଭୌତିକ ଉନ୍ନତି ଏବଂ ପାଶ୍ଚାତ୍ୟ ରାଷ୍ଟ୍ରମାନଙ୍କ ସମକକ୍ଷ ହେବା ଅସମ୍ଭବ ।

ଏହିପରି ଭାବରେ କେତେ ବର୍ଷ ଚାଲିବା ପରେ ଇଂରେଜ-ମାନେ ଏ ଦେଶରେ ଶାସନ ପରିଚାଳନାରେ କେତେକ ଅସୁବିଧାର ସମ୍ମୁଖୀନ ହେଲେ । ଅଧିକାଂଶ ଶାସନକର୍ତ୍ତା ଇଂରେଜ; ମାତ୍ର ଭାରତୀୟ ଭାଷାରେ ସେମାନେ ଏକପ୍ରକାର ଅଜ୍ଞ । ପୁଣି ଇଂରେଜ ଆଇନ ଏ ଦେଶରେ ଲାଗୁହେବାରୁ, ଇଂରାଜୀ ଭାଷାରେ ଲିଖିତ ସେହି ଆଇନଗୁଡ଼ିକୁ ଏ ଦେଶରେ ପ୍ରାୟ କେହି ବୁଝିପାରିଲେ ନାହିଁ । ତେଣୁ ଶାସନକାର୍ଯ୍ୟରେ ସହାୟତା କରୁଥିବା ଏ ଦେଶୀୟ ଅଧସ୍ତନ କର୍ମଚାରୀମାନଙ୍କୁ ଇଂରାଜୀରେ ବ୍ୟୁତ୍ପନ୍ନ କରାଇବା ଉଦ୍ଦେଶ୍ୟରେ ସରକାର କେତେଗୁଡ଼ିଏ ଇଂରାଜୀ ସ୍କୁଲ ପ୍ରତିଷ୍ଠା ଲାଗି ଉଦ୍ୟୋଗୀ ହେଲେ । ୧୮୦୦ ମସିହାରେ କଲିକତାର ଚିତ୍ପୁର, ଆମଡ଼ାତଲା ଏବଂ ଫୋର୍ଟ ଉଇଲିୟମ୍‌ଠାରେ ଚନିଜଣ ଇଂରେଜ ଯୁବକ ତିନିଗୋଟି ଇଂରାଜୀ ପାଠଶାଳା ପ୍ରତିଷ୍ଠାକଲେ ।

ଏହି ବିଦ୍ୟାଳୟଗୁଡ଼ିକରେ ଇଂରଜୀ ଶିକ୍ଷା ଦେବାଲାଗି କୌଣସି ସୁସଂହତ ବା ବୈଜ୍ଞାନିକ ପ୍ରଣାଳୀ ଅବଲମ୍ବନ କରାଯାଉ-ନଥିଲା । ବିନା ବ୍ୟାକରଣଜ୍ଞାନରେ, ଖଣ୍ଡି ଇଂରାଜୀରେ, କୌଣସି ପ୍ରକାରେ ନିଜ ମନକଥା ପ୍ରକାଶ କରିପାରିବାହିଁ ସେ ସମୟରେ

ଇଂରେଜୀ ଶିକ୍ଷାର ଚରମ ପରାକାଷ୍ଠା ଥିଲା । ଏଠାରୁ ଉତ୍ତୀର୍ଣ୍ଣ ଛାତ୍ରମାନଙ୍କର ଇଂରେଜୀ ଭାଷା ଉପରେ କି ପରିମାଣ ଦଖଲ ଥିଲା, ସେ କଥା ତଳେ ବର୍ଣ୍ଣିତ କୌତୁକପୂର୍ଣ୍ଣ ସତ୍ୟ ଘଟନାଟିରୁ ଜଣାଯିବ ।

ହୁଗୁଲୀ ଜିଲ୍ଲା କଲେକ୍ଟର ମାର୍ଶମ୍ୟାନ ସାହେବଙ୍କ ଇଜଲାସରେ ଜଣେ ତଥାକଥିତ ଇଂରାଜୀ-ପଢ଼ୁଆ ହିନ୍ଦୁ ଗୁମାସ୍ତା ଥିଲେ । ସେ ସମୟରେ ରଥଯାତ୍ରା ଉପଲକ୍ଷରେ ସରକାରୀ ଦପ୍ତର-ଗୁଡ଼ିକ ବନ୍ଦ ହେଉନଥିଲା; ମାତ୍ର ଧର୍ମପ୍ରାଣ ଗୁମାସ୍ତା ଜଣକ ରଥଯାତ୍ରା ଦିନ କଚେରିରୁ ଅନୁପସ୍ଥିତ ହୋଇ ରଥ ଦେଖିବାକୁ ଯାଇଥିଲେ । ପରଦିନ ସିରସ୍ତାରେ ପହଞ୍ଚିବା ମାତ୍ରେ ସାହେବ ପଚାରିଲେ ଯେ ସେ କାହିଁକି ପୂର୍ବଦିନ ଅନୁପସ୍ଥିତ ଥିଲେ । ରଥଯାତ୍ରା କଣ, ତାହା ସାହେବଙ୍କର ଅଜଣା ଥିବା ଯୋଗୁଁ ଗୁମାସ୍ତାଟି ତାଙ୍କୁ ଇଂରାଜୀରେ ବୁଝାଇ କହିଲେ—**'Wooden chariot, two storey high, God almighty sit upon, long long ropes, thousand men catch, pull pull-pull, runaway—runaway.'** । ଆଜି କଥାଟି ହାସ୍ୟାସ୍ପଦ ଓ ଅବିଶ୍ୱାସ ମନେହେଉଥିଲେ ହେଁ ଉନବିଂଶ ଶତାବ୍ଦୀର ପ୍ରଥମ ଭାଗରେ ଏହାହିଁ ଇଂରାଜୀରେ ଉଚ୍ଚଶିକ୍ଷା ବୋଲି ସ୍ୱୀକୃତି ପାଇଥିଲା ।

ଲର୍ଡ ମିଣ୍ଟୋ ଭାରତର ବଡ଼ଲାଟ ରୂପେ ଆସି ଏ ଦେଶୀୟ ଲୋକଙ୍କ ଶିକ୍ଷା ଓ ସଂସ୍କୃତି ସମ୍ବନ୍ଧରେ ଆନ୍ତରିକ ଆଗ୍ରହ ପ୍ରକାଶ କଲେ । ୧୮୧୧ ଖ୍ରୀଷ୍ଟାବ୍ଦରେ ସେ ଏକ ସରକାରୀ ଟିପ୍ପଣୀରେ ଲେଖିଥିଲେ—"ମୁଁ ଶୁଣୁଛି ଯେ ଭାରତୀୟ ପ୍ରଜାମାନଙ୍କ ଶିକ୍ଷା ଓ

ସଂସ୍କୃତ ବିଦ୍ୟାକୁ ବିନ ଅଧୋଗତିକୁ ଯାଉଛି । ଅନୁସନ୍ଧାନ କରି ମୁଁ ଜାଣିପାରିଲି ଯେ ପଣ୍ଡିତମାନଙ୍କ ସଂଖ୍ୟା ହ୍ରାସ ପାଇବା ସଙ୍ଗେ ସଙ୍ଗେ ଦର୍ଶନ, ମନୋବିଜ୍ଞାନ ପ୍ରଭୃତି ଶାସ୍ତ୍ର-ଚର୍ଚ୍ଚା ବହୁ ପରିମାଣରେ କମିଯାଇଛି । ଏହି ପ୍ରକାର ଅନାଦର ଯୋଗୁଁ ଅନେକ ବହୁ ଉତ୍କୃଷ୍ଟ ଗ୍ରନ୍ଥ ଲୋପ ପାଇବାକୁ ବସିଲାଣି । ଏହି ସମ୍ବନ୍ଧ ସମ୍ପର୍କରେ ସରକାର ଏ ଦିଗରେ ସମ୍ପୂର୍ଣ୍ଣ ସାହାଯ୍ୟ ନକଲେ, ଅଦୂର-ଭବିଷ୍ୟତରେ ଭାରତୀୟ ବିଦ୍ୟାର ପୁନରୁଦ୍ଧାର ଅସମ୍ଭବ ହୋଇପଡ଼ିବ ।"

ଲର୍ଡ଼ ମିଣ୍ଟୋଙ୍କ ଏ ପ୍ରକାର ମନ୍ତବ୍ୟ ଯୋଗୁଁ ଭାରତୀୟ ପ୍ରଜାମାନଙ୍କ ମଧ୍ୟରେ ଶିକ୍ଷା ବିସ୍ତାର ଲାଗି ସରକାର ବାର୍ଷିକ ଏକ ଲକ୍ଷ ଟଙ୍କା ହଜାର ଟଙ୍କା ବ୍ୟୟ-ବରାଦ କଲେ । ମାତ୍ର ବଡ଼ଲାଟଙ୍କ ଉପରୋକ୍ତ ମନୋଭାବ ଦେଖି ଏହି ଟଙ୍କା କେବଳ ଟୋଲ ପ୍ରତିଷ୍ଠା ଓ ସଂସ୍କୃତ-ଶିକ୍ଷାର ବିସ୍ତାର ଲାଗି ବ୍ୟୟ କରାଯାଉଥିଲା । ମାତ୍ର ପ୍ରଗତିକାମୀ ରାମମୋହନ ଏ ପ୍ରକାର ଏକଦେଶଦର୍ଶୀ ଅପୂର୍ଣ୍ଣ ଶିକ୍ଷାନୀତିକୁ ଗ୍ରହଣ କରି ପାରିଲେ ନାହିଁ । ଇଂରାଜୀ ଭାଷାମାଧ୍ୟମରେ ଭାରତୀୟମାନଙ୍କୁ ଆଧୁନିକ ଜ୍ଞାନ-ବିଜ୍ଞାନ ସହିତ ପରିଚିତ କରାଇବା ଲାଗି ସେ ବଡ଼ ବ୍ୟଗ୍ର ହୋଇପଡ଼ିଲେ । ଏହି ସମୟରେ ଡେଭିଡ଼ ହେୟାର ( David Hare ) ବୋଲି ଜଣେ ଇଂରେଜ କଲିକତାରେ ବ୍ୟବସାୟ ଆରମ୍ଭ କରିଥିଲେ । ଇଂଲଣ୍ଡବାସୀ ହୋଇଥିଲେ ସୁଦ୍ଧା ହେୟାର ସାହେବ ଆନ୍ତରିକ ଭାବରେ ଭାରତୀୟମାନଙ୍କର ସର୍ବାଙ୍ଗୀଣ ଉନ୍ନତି କାମନା କରୁଥିଲେ ।

ବିଭିନ୍ନ ଧର୍ମ-ସଂସ୍କାର ସଭାମାଧ୍ୟମରେ ହେୟାର ସାହେବଙ୍କ ସହିତ ରାଜାଙ୍କର ଘନିଷ୍ଠତା ଜନ୍ମିଲା । ଧର୍ମ ଓ ସମାଜ-ସଂସ୍କାର

ଲାଗି ରାମମୋହନଙ୍କର ବ୍ୟାକୁଳତା ଦେଖି ହେଆର ମଧ୍ୟ ତାଙ୍କୁ କହିଲେ ଯେ ଆଧୁନିକ ଶିକ୍ଷା ବିସ୍ତାର ବିନା ଏହି ଲକ୍ଷ୍ୟ ସାଧନ ସମ୍ଭବ ନୁହେଁ । ଏହାଛଡ଼ା ଆଧୁନିକ ଇଂରାଜୀ ବିଦ୍ୟାଳୟ ସ୍ଥାପନ ଲାଗି ସେ ସବୁ ପ୍ରକାରେ ସହଯୋଗ କରିବେ ବୋଲି ମଧ୍ୟ ରାମମୋହନଙ୍କୁ ଜଣାଇଦେଲେ । ଠିକ୍ ଏତିକବେଳକୁ ଖ୍ରୀଷ୍ଟଧର୍ମର ପ୍ରଚାର ଉଦ୍ଦେଶ୍ୟରେ ଏ ଦେଶକୁ ଆସିଥିବା ଜଣେ ଯଥାର୍ଥ ପଣ୍ଡିତ ପାଦ୍ରୀ 'ଡଫ୍' ( Duff ) ସାହେବ ଘରୋଇ ଉଦ୍ୟମରେ ଭାରତୀୟମାନଙ୍କ ଲାଗି ଏକ ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା କରିବା ନିମନ୍ତେ ଉଦ୍ୟୋଗୀ ହେଲେ । ଏଇ ସମ୍ବାଦ ପାଇବାମାତ୍ରେ ରାମମୋହନ ଡଫ୍ ସାହେବଙ୍କୁ ଭେଟି ସେ କି ପ୍ରକାର ସାହାଯ୍ୟ ଆବଶ୍ୟକ କରୁଛନ୍ତି, ଜାଣିବାକୁ ଚାହିଲେ । ସେ ସମୟରେ ହିନ୍ଦୁମାନଙ୍କର ଧାରଣା ଥିଲା ଯେ ଇଂରାଜୀ ଶିକ୍ଷା ପାଇଲେ ପିଲାମାନେ ଖ୍ରୀଷ୍ଟାନ ପାଲଟିଯିବେ । ଏଇ ଆଶଙ୍କାରେ ହିନ୍ଦୁ ବସ୍ତିରେ କେହି ଇଂରାଜୀ ବିଦ୍ୟାଳୟ ସ୍ଥାପନ ଲାଗି ଘରଭଡ଼ା ଦେଉନଥିଲେ । ଏଇ କଥା ଶୁଣି, ରାମମୋହନ ଆତ୍ମୀୟ-ସଭାର ଅଧିବେଶନ କରିବା ନିମନ୍ତେ ଅଲଗା କରି ରଖିଥିବା ଘରଟି ବିନା ଭଡ଼ାରେ ଇଂରାଜୀ ବିଦ୍ୟାଳୟ ବସାଇବା ନିମନ୍ତେ ଡଫ୍ ସାହେବଙ୍କୁ ଅର୍ପଣ କଲେ । କେବଳ ଏତିକ ନୁହେଁ, ଇଂରାଜୀ ବିଦ୍ୟାଳୟ ପ୍ରତିଷ୍ଠା ଲାଗି ସେ ଏତେଦୂର ବ୍ୟଗ୍ର ହୋଇପଡ଼ିଥିଲେ ଯେ, ସରକାରଙ୍କ ଆନୁକୂଲ୍ୟକୁ ଉପେକ୍ଷା କରି ଏହି ବିଦ୍ୟାଳୟର ସମସ୍ତ ବ୍ୟୟଭାର ଆପେ ବହନ କଲେ । ରାମମୋହନଙ୍କ ଆନୁକୂଲ୍ୟରେ ପ୍ରତିଷ୍ଠିତ ଏଇ ଇଂରାଜୀ ବିଦ୍ୟାଳୟରେ ପ୍ରାୟ ଅଶୀ ଜଣ ହିନ୍ଦୁ ବାଳକ ନିୟମିତ ଭାବରେ ଅଧ୍ୟୟନ କରୁଥିଲେ । ଏଇ ନିୟମିତ ଛାତ୍ରମାନଙ୍କ ମଧ୍ୟରେ ବିଶ୍ୱକବି ରବୀନ୍ଦ୍ରନାଥଙ୍କ ପିତା ମହର୍ଷି ଦେବେନ୍ଦ୍ରନାଥ ଠାକୁର ଅନ୍ୟତମ

ଥିଲେ । ରାମମୋହନ ବନ୍ଧୁ ପୁତ୍ର ଦେବେନ୍ଦ୍ରନାଥଙ୍କୁ ବିଶେଷ ସ୍ନେହ କରୁଥିଲେ ଏବଂ ବହୁ ସମୟରେ ଦେବେନ୍ଦ୍ରନାଥଙ୍କୁ ନିଜ ବଗି-ଗାଡ଼ିରେ ବସାଇ ବିଦ୍ୟାଳୟରେ ଛାଡ଼ି ଦେଇ ଆସୁଥିଲେ ।

କେବଳ ଏତିକି ନୁହେଁ – ଇଷ୍ଟ ଇଣ୍ଡିଆ କମ୍ପାନୀ ସରକାରଙ୍କ ଶିକ୍ଷାନୀତିକୁ ଅତି ସମ୍ମାନଜନକ ଭାବରେ ସମାଲୋଚନା କରି ରାମମୋହନ ୧୮୨୩ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ବଡ଼ଲାଟ ଲର୍ଡ଼ ଆମହାର୍ଷ୍ଟଙ୍କୁ ଖଣ୍ଡେ ପତ୍ର ଲେଖିଲେ । ସେଇ ଐତିହାସିକ ପତ୍ରରେ ସେ ଲେଖିଥିଲେ—"ଏ ଦେଶରେ ସଂସ୍କୃତ ବିଦ୍ୟାଳୟ ସ୍ଥାପନ କରି ସରକାର ଉପଯୁକ୍ତ ପଣ୍ଡିତମାନଙ୍କ ଦ୍ୱାରା ସଂସ୍କୃତଶିକ୍ଷା ପ୍ରଦାନ ଲାଗି ମନସ୍ଥ କରିଛନ୍ତି । ମାତ୍ର ଏ ପ୍ରକାର ବିଦ୍ୟାଳୟ ଏ ଦେଶରେ ନୂତନ ନୁହେଁ । ଲର୍ଡ଼ ବେକନ୍‌ଙ୍କ ପୂର୍ବରୁ ଇଂଲଣ୍ଡର ଶିକ୍ଷା-ସଂକ୍ରାନ୍ତ ଅବସ୍ଥା ଯେପରି ଥିଲା, ବର୍ତ୍ତମାନ ଭାରତର ଶିକ୍ଷା-ଅବସ୍ଥା ସେହିପରି ବୋଲି ଧରିବାକୁ ପଡ଼ିବ । ଦୁଇ ହଜାର ବର୍ଷରୁ ଅଧିକ କାଳ ଯେଉଁ ଭାଷା ଏ ଦେଶରେ ପ୍ରଚଳିତ ରହିବ, ତାହାର ଅଧିକତର ଅନୁଶୀଳନରେ ବିଶେଷ କୌଣସି ଲାଭ ଉତ୍ପନ୍ନ ହେବ ନାହିଁ । × × × ଭାରତୀୟମାନଙ୍କ ଯଥାର୍ଥ ଉନ୍ନତି-ସାଧନ ଯଦି ଇଂରେଜମାନଙ୍କର ଉଦ୍ଦେଶ୍ୟ ହୋଇଥାଏ, ତେବେ ଭାରତବାସୀମାନଙ୍କ ମଧ୍ୟରେ ପଦାର୍ଥବିଦ୍ୟା, ରସାୟନବିଦ୍ୟା, ଶରୀରବିଦ୍ୟା ଓ ଅନ୍ୟାନ୍ୟ ଯୁଗୋପଯୋଗୀ ବିଦ୍ୟାର ପ୍ରସାର ଲାଗି ଇଂରେଜ ସରକାର ସଚେତନ ଓ ସଚେଷ୍ଟ ହେବା ଉଚିତ । ଏ ଦେଶରେ ଶିକ୍ଷା ବିସ୍ତାର ଲାଗି ଯେଉଁ ପରିମାଣ ଟଙ୍କା ବ୍ୟୟ କରାଯାଉଛି, ତଦ୍ୱାରା ଇଂଲଣ୍ଡରେ ଉଚ୍ଚଶିକ୍ଷାପ୍ରାପ୍ତ ଇଉରୋପୀୟ ଶିକ୍ଷକ ନିଯୁକ୍ତ ଏବଂ ବିଜ୍ଞାନଶିକ୍ଷା ଲାଗି ଆବଶ୍ୟକୀୟ ଯନ୍ତ୍ରାଦିର ବ୍ୟୟ

ନବାହ କରିବା ଏକାନ୍ତ ବାଞ୍ଛନୀୟ । × × × ଆଉର ଗୋଟିଏ କଥା, ଇଂରାଜୀ ଭାଷା ମାଧ୍ୟମରେ ଆଧୁନିକ ଶିକ୍ଷା ବ୍ୟତିରେକେ ଏ ଦେଶରେ ବ୍ୟାପିଯାଇଥିବା କୁସଂସ୍କାର କଦାପି ଦୂର ହୋଇ ପାରିବ ନାହିଁ । କୁସଂସ୍କାର ବିନାଶ ବ୍ୟତୀତ ସାମାଜିକ ଉନ୍ନତି ଅସମ୍ଭବ । ଭାରତବାସୀଙ୍କ ଶୁଭେଚ୍ଛୁ ସଦାଶୟ ଇଂରେଜ ସରକାର ଏ ବିଷୟରେ ମଧ୍ୟ ଅବହିତ ହେବା ଉଚିତ । × × × ଏହି ଆବେଦନପତ୍ର ଆପଣଙ୍କ ସମକ୍ଷରେ ଉପସ୍ଥାପିତ କରି ମୁଁ ମୋର ଅଗଣିତ ଦେଶବାସୀ ଏବଂ ସୁସଭ୍ୟ ଇଂଲଣ୍ଡେଶ୍ୱର ତଥା ଭାରତେଶ୍ୱରଙ୍କ ପ୍ରତି ଗୋଟିଏ ଅତ୍ୟାବଶ୍ୟକୀୟ କର୍ତ୍ତବ୍ୟ ସାଧନ କଲି ବୋଲି ଅନୁଭବ କରୁଛି । ଭାରତବାସୀଙ୍କ କଲ୍ୟାଣସାଧନ ଲାଗି ଆପଣମାନଙ୍କର ସଦିଚ୍ଛାପ୍ରତି ମୋର ପ୍ରଗାଢ଼ ବିଶ୍ୱାସ ରହିଥିବା ଯୋଗୁଁ ମୁଁ ନିଃସଙ୍କୋଚରେ ଆପଣଙ୍କ ନିକଟରେ ମୋର ଅନ୍ତର୍ନିହିତ କଥାଗୁଡ଼ିକ ନିବେଦନ କଲି ।”

ଏଇ ଚିଠିଟି ଆମ ଦେଶର ଶିକ୍ଷାକ୍ଷେତ୍ରରେ ଏକ ବୈପ୍ଲବିକ ଯୁଗର ସୂତ୍ରପାତ କଲା । ସେ ସମୟରେ ଅଧିକାଂଶ ଭାରତବାସୀ ଦେଶର ଶିକ୍ଷାନୀତି ସଂପର୍କରେ କୌଣସି ଆଗ୍ରହ ପ୍ରକାଶ କରୁ ନଥିଲେ । ସେମାନଙ୍କର ଏହି ଅନାଗ୍ରହ ଯୋଗୁଁ ସରକାର ମଧ୍ୟ ଶିକ୍ଷାକ୍ଷେତ୍ରରେ ଗତାନୁଗତିକ ପଦ୍ଧତିରେ ଅଳ୍ପ କିଛି ଟଙ୍କା ବ୍ୟୟ କରୁଥିଲେ । ମାତ୍ର ରାଜା ରାମମୋହନଙ୍କର ଉପରୋକ୍ତ ବଳିଷ୍ଠ ଯୁକ୍ତି-ପୂର୍ଣ୍ଣ ପତ୍ରଟି ଏଇ ସରକାରୀ ନିଷ୍କ୍ରିୟତା ମୂଳରେ ଏକ ପ୍ରଚଣ୍ଡ ଆଘାତ ଆଣିଲା । ଚିଠିଟି ଶିକ୍ଷିତ ଇଂରେଜ-ସମାଜରେ ମଧ୍ୟ ପ୍ରବଳ ଆଲୋଡ଼ନ ସୃଷ୍ଟି କରିଥିଲା ଏବଂ ବହୁ ଉଚ୍ଚଶିକ୍ଷିତ ଇଂରେଜ ଏ ବିଷୟରେ ଅନୁସନ୍ଧାନ ଓ ପ୍ରତିକାର ଦାବି କଲେ । ସରକାରୀ କଳର ଗତି ଅତ୍ୟନ୍ତ ମନ୍ଥର । ତେଣୁ ରାମମୋହନଙ୍କ ଏଇ ସାହସିକ

ଉଦ୍ୟମର ସୁଫଳ ମିଳିଲା ତାଙ୍କ ମୃତ୍ୟୁ (୧୮୩୩ ଖ୍ରୀ: ଅ:) ପରେ । ୧୮୩୫ ଖ୍ରୀଷ୍ଟାବ୍ଦରେ ତତ୍କାଳୀନ ବଡ଼ଲାଟ ଲର୍ଡ଼ ବେଣ୍ଟିକ୍ ଇଂରାଜୀ ଶିକ୍ଷା-ବିସ୍ତାର ମତକୁ ଆଇନରେ ପରିଣତ କଲେ । ତା ଫଳରେ କ୍ରମେ କ୍ରମେ ଏ ଦେଶର ବିଭିନ୍ନ ସ୍ଥାନରେ ସାନବଡ଼ ଇଂରାଜୀ ବିଦ୍ୟାଳୟମାନ ପ୍ରତିଷ୍ଠା କରାଯାଇ ଆଧୁନିକ ଶିକ୍ଷାର ବିସ୍ତାର ଆରମ୍ଭହେଲା ।

## ବେଦ-ବିଦ୍ୟାଳୟ

ଇଂରାଜୀ ଶିକ୍ଷା-ବିସ୍ତାର ଲାଗି ରାମମୋହନ ଆଗ୍ରହ ପ୍ରକାଶ କରିଥିଲେ ଭାରତକୁ ଯୁଗୋପଯୋଗୀ କରି ଗଢ଼ିବା ସକାଶେ । ମାତ୍ର ଭାରତୀୟ ଐତିହ୍ୟ ଓ ସଂସ୍କୃତି ପ୍ରତି ତାଙ୍କର ସମ୍ମାନ ସର୍ବଦା ଅକ୍ଷୁର୍ଣ୍ଣ ରହିଥିଲା । ତାଙ୍କର ମନୋଭାବ ବିଜାତୀୟ ଥିଲା ବୋଲି କହିବା ନିତାନ୍ତ ଅଯୌକ୍ତିକ । ରାଜାଙ୍କର ଏକାନ୍ତ ଇଚ୍ଛା ଥିଲା ଯେ ତାଙ୍କର ଦେଶବାସୀ ସ୍ୱଦେଶର ଗୌରବ ବେଦ, ବେଦାନ୍ତ, ଉପନିଷଦ୍, ଗୀତା ପ୍ରଭୃତି ଯଥାର୍ଥ ଭାବରେ ଅନୁଶୀଳନ କରି ତହିଁର ପ୍ରକୃତ ଅର୍ଥ ଉପଲବ୍ଧି କରନ୍ତୁ । ଏହି ଉଦ୍ଦେଶ୍ୟରେ ସେ ନିଜ ବାସଭବନ, ୭୪ ନମ୍ବର ମାଣିକତଲାର ଏକାଂଶରେ ୧୮୨୬ ମସିହାରେ ସମ୍ପୂର୍ଣ୍ଣଭାବେ ନିଜ ବ୍ୟୟରେ ଗୋଟିଏ 'ବେଦ-ବିଦ୍ୟା-ଳୟ' ପ୍ରତିଷ୍ଠା କଲେ । ଏହି ବିଦ୍ୟାଳୟ ସମ୍ପର୍କରେ ରାମମୋହନଙ୍କର ଘନିଷ୍ଠ ବନ୍ଧୁ ଆଡାମ (Adam) ସାହେବ ଲେଖିଛନ୍ତି—"ରାମମୋହନ ରାୟ ଗୋଟିଏ ସାନ ମାତ୍ର ଉତ୍କୃଷ୍ଟ ବିଦ୍ୟାଳୟ ସ୍ଥାପନ କରିଛନ୍ତି । ଏହାର ନାମ 'ବେଦ-ବିଦ୍ୟାଳୟ' ।

କହିବାରୁ, ରାମମୋହନ ସନ୍ତୁଷ୍ଟ ହୋଇ ପରଦିନ ଲର୍ଡ଼ ବେଣ୍ଟିଙ୍କଙ୍କ ସଙ୍ଗେ ସାକ୍ଷାତ କଲେ ।

ଏଠାରେ କେତେଜଣ ଯୁବକ ଜଣେ ସୁପଣ୍ଡିତ ଆଚାର୍ଯ୍ୟଙ୍କ ନିକଟରେ ସଂସ୍କୃତ ଶିଖୁଛନ୍ତି । ହିନ୍ଦୁଶାସ୍ତ୍ର ଯେ ଏକେଶ୍ୱରବାଦୀ, ତାହା ପ୍ରଚାର କରିବାହିଁ ଏହି ବିଦ୍ୟାଳୟର ଉଦ୍ଦେଶ୍ୟ । ଏହି ବିଦ୍ୟାଳୟରେ ସଂସ୍କୃତ ଶାସ୍ତ୍ର ସଙ୍ଗେ ପାଶ୍ଚାତ୍ୟ ବିଜ୍ଞାନ ଶିକ୍ଷା ଦେବାର ଉଦ୍ଦେଶ୍ୟ ମଧ୍ୟ ରାମମୋହନଙ୍କର ରହିଛି । ଶିକ୍ଷା ସମ୍ବନ୍ଧରେ ତାଙ୍କ ପରି ଉଦାର ଧାରଣା ଏ ଦେଶରେ ଆଉ କେହି ପୋଷଣ କରୁଥିବା ପରି ବୋଧହେଉନାହିଁ ।"

## ସାମ୍ବାଦିକତା ଓ ରାଜନୀତି କ୍ଷେତ୍ରରେ

କେବଳ ଆଧ୍ୟାତ୍ମିକତା ବା ଧର୍ମକ୍ଷେତ୍ରରେ ନୁହେଁ, ରାମମୋହନ ରାୟ ଭାରତବାସୀଙ୍କର ସର୍ବାଙ୍ଗୀଣ ଉନ୍ନତି ଲାଗି ଚେଷ୍ଟିତ ଥିଲେ । ସେ ସମୟର ଇଂଲଣ୍ଡ କେତେକ ଭୌତିକ ଓ ବ୍ୟାବହାରିକ ବିଷୟରେ ଭାରତ ଅପେକ୍ଷା ଯଥେଷ୍ଟ ଉନ୍ନତ ଥିଲା । ସ୍ୱଦେଶର ଉନ୍ନତି ଲାଗି ରାମମୋହନ ସେଇ ପନ୍ଥା ଗ୍ରହଣ କରିବାର ପକ୍ଷପାତୀ ଥିଲେ; ମାତ୍ର ଇଂରେଜମାନେ ଏ ଦେଶର ଶାସନଗାଦି ଦଖଲ କରି ଭାରତୀୟମାନଙ୍କ ଉପରେ ରାଜପଣ କରନ୍ତୁ—ଏ କଥା ସେ ଆଦୌ ପସନ୍ଦ କରୁ ନଥିଲେ । ରାମମୋହନଙ୍କ ଚରିତ୍ରର ବୈଶିଷ୍ଟ୍ୟଗୁଡ଼ିକ ମଧ୍ୟରେ ସ୍ୱାଧୀନତା ଓ ଆତ୍ମ-ସମ୍ମାନ-ଜ୍ଞାନ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଠିକ୍ ଚିନ୍ତା କଲେ ବୁଝାପଡ଼ିବ ଯେ ଏଇ ସ୍ୱାଧୀନ ଚେତନା ଯୋଗୁଁ ରାମମୋହନ ଅନ୍ୟମାନଙ୍କ ପରି ପ୍ରଚଳିତ ସାମାଜିକ ଓ ଧର୍ମ ସମ୍ବନ୍ଧୀୟ ପ୍ରଥାଗୁଡ଼ିକୁ ଗତାନୁଗତିକ ଭାବରେ ଅନୁସରଣ ନକରି ଜ୍ଞାନ ଓ ଯୁକ୍ତିଦ୍ୱାରା ସେଗୁଡ଼ିକୁ

ବିଶ୍ଳେଷଣ କରି ଗ୍ରହଣ କରିବାର ପକ୍ଷପାତୀ ଥିଲେ । ରାମମୋହନଙ୍କ ଆତ୍ମ-ସମ୍ମାନ ଜ୍ଞାନ ଓ ସ୍ୱାଧୀନତା-ପ୍ରିୟତା ବିଷୟରେ ଏଠାରେ ଦୁଇଗୋଟି ଘଟଣା ଉଲ୍ଲେଖଯୋଗ୍ୟ ।

୧୮୨୮ ଖ୍ରୀଷ୍ଟାବ୍ଦର କଥା । ସତୀଦାହ ନିବାରଣ ଆନ୍ଦୋଳନ ସେ ସମୟରେ ଜୋରସୋର୍ ଚାଲିଥାଏ । ଭାରତର ତତ୍କାଳୀନ ବଡ଼ଲାଟ ଲର୍ଡ଼ ବେଣ୍ଟିକ୍ ସତୀଦାହ-ନିବାରଣ ଆନ୍ଦୋଳନର ପ୍ରଧାନ ପୁରୋଧା ରାମମୋହନଙ୍କ ସହିତ ସେ ସମ୍ପର୍କରେ କେତେକ ଆଲୋଚନା କରିବା ଉଦ୍ଦେଶ୍ୟରେ ନିଜର ସଚିବ ( **Private Secretary** ) ଙ୍କ ଦ୍ୱାରା ରାମମୋହନଙ୍କୁ ଡକାଇଲେ । ରାମମୋହନଙ୍କ ଘରକୁ ଆସି ସଚିବ ମହୋଦୟ ଅତ୍ୟନ୍ତ ଶାନ୍ତରେ କହିଲେ—"ମହାଶୟ, ମହାମାନ୍ୟ ବଡ଼ଲାଟ ବାହାଦୁର ଆପଣଙ୍କୁ ଡକାଇପଠାଇଛନ୍ତି ।" ରାମମୋହନଙ୍କ ସ୍ୱାଧୀନ ତେଜସ୍ୱୀ ମନ ଏ ପ୍ରକାର ଆଦେଶମୂଳକ ଆହ୍ୱାନରେ କ୍ଷୁବ୍ଧ ହେଲା । ସେ ଉତ୍ତର କଲେ—"ମହାଶୟ, ଆପଣ ବଡ଼ଲାଟ ବାହାଦୁରଙ୍କୁ ଦୟାକରି ଜଣାଇଦେବେ ଯେ, ବର୍ତ୍ତମାନ ଶାସ୍ତ୍ରଚର୍ଚ୍ଚାରେ ଅତ୍ୟନ୍ତ ବ୍ୟସ୍ତ ରହିଥିବା ଯୋଗୁଁ ତାଙ୍କ ନିକଟକୁ ଯିବା ମୋ ପକ୍ଷରେ ସମ୍ଭବ ହେବ ନାହିଁ ।" ବିସ୍ମୟ-ବିମୂଢ଼ ସଚିବ ଫେରିଆସି ବଡ଼ଲାଟଙ୍କୁ ଏ କଥା ଜଣାଇଲେ । ଗୁଣଗ୍ରାହୀ ବେଣ୍ଟିକ୍ ଶୁଣିବା ମାତ୍ରେ ରାଜା ରାମମୋହନଙ୍କ କ୍ଷୋଭର କାରଣ ବୁଝିପାରି ସଚିବଙ୍କୁ କହିଲେ—"ପୁଣି ରାମମୋହନଙ୍କ ନିକଟକୁ ଯାଇ କୁହ—ମହାଶୟ, ମିଷ୍ଟର ଉଇଲିୟମ ବେଣ୍ଟିକ୍ ଆପଣଙ୍କ ସହିତ ଆଲୋଚନା ଲାଗି ଆଗ୍ରହୀ । ଦୟାକରି ତାଙ୍କ ନିକଟକୁ ଯିବା ଲାଗି ସେ ଅନୁରୋଧ ଜଣାଇଛନ୍ତି ।" ସଚିବ ଦ୍ୱିତୀୟବାର ରାଜାଙ୍କ ନିକଟରେ ପହଞ୍ଚି ସେହିପରି

ରାମମୋହନ ଯଥାର୍ଥ ସ୍ୱାଧୀନତାପ୍ରେମୀ ଥିଲେ । କେବଳ ଭାରତୀୟ ନୁହେଁ, ପୃଥିବୀର ପ୍ରତ୍ୟେକ ମଣିଷର ସ୍ୱାଧୀନତା ପାଇଁ ସେ ଏକାନ୍ତ ଆଗ୍ରହୀ ଥିଲେ । କୌଣସି ପରାଧୀନ ଜାତି ମୁକ୍ତିଲାଭ କରିଛି ଜାଣିଲେ ସେ ଅତ୍ୟନ୍ତ ଆନନ୍ଦିତ ହେଉଥିଲେ । ପୁଣିକୌଣସି ଦୁର୍ବଳ ଜାତି ଅନ୍ୟ ଏକ ବଳିଷ୍ଠ ଜାତି ଦ୍ୱାରା ପରାଭୂତ ହୋଇଛି ଶୁଣିଲେ ସେ ଅତ୍ୟନ୍ତ ମର୍ମାହତ ହେଉଥିଲେ । ନେପଲ୍‌ସ୍‌ର ଅଧିବାସୀମାନେ ଯୁଦ୍ଧକ୍ଷେତ୍ରରେ ପରାଜିତ ହୋଇ ନିଜର ପୂର୍ବ ଅର୍ଜିତ ସ୍ୱାଧୀନତା ସ୍ୱେଚ୍ଛାଚାରୀ ରାଜାଙ୍କ ନିକଟରେ ହରାଇଛନ୍ତି—ଏହି ସମ୍ବାଦ ପାଇ ରାମମୋହନ ଏତେଦୂର ମର୍ମାହତ ହୋଇଥିଲେ ଯେ, ତିନି ଦିନ ପର୍ଯ୍ୟନ୍ତ ସେ କୌଣସି ଭାରତୀୟ ବା ଇଂଲଣ୍ଡବାସୀ ବନ୍ଧୁଙ୍କ ସହିତ ସାକ୍ଷାତ କରିନଥିଲେ ।

ଏହି ସମୟରେ ସ୍ପେନ ଦେଶରେ ସ୍ୱେଚ୍ଛାଚାରିତା ବିରୁଦ୍ଧରେ ଆନ୍ଦୋଳନ କରି ନିୟମତନ୍ତ୍ର ଶାସନ ପ୍ରତିଷ୍ଠା ଲାଗି ଜନମତ ଜାଗିଉଠିଥିଲା । ଏହି ଆନ୍ଦୋଳନରେ ଶେଷ ପର୍ଯ୍ୟନ୍ତ ଜନସାଧାରଣଙ୍କ ପ୍ରତିନିଧିମାନେ ଜୟଯୁକ୍ତ ହୋଇଥିଲେ । ଏହି ସମ୍ବାଦ ପାଇ ରାମମୋହନ ଆନନ୍ଦରେ ଏପରି ଆତ୍ମହରା ହୋଇଥିଲେ ଯେ, ପ୍ରାୟ ଛଅଶହ ଦେଶୀୟ ଓ ବିଦେଶୀ ବ୍ୟକ୍ତିଙ୍କୁ ନିମନ୍ତ୍ରଣ କରି ସେ ଭୂରି ଭୋଜନରେ ଆପ୍ୟାୟିତ କରିଥିଲେ । କେବଳ ଏତିକି ନୁହେଁ, ୧୮୨୯ ମସିହାରେ ରାମମୋହନ ଜାହାଜ ଯୋଗେ ଇଂଲଣ୍ଡ ଯାଉଥିବା ସମୟରେ, ମଝି ଦରିଆରେ, ସ୍ୱାଧୀନତାସଂଗ୍ରାମରେ ଜୟଲାଭ କରିଥିବା ଏକ ସ୍ପେନ୍ ଦେଶୀୟ ଜାହାଜ ତାଙ୍କ ଜାହାଜକୁ ଅତିକ୍ରମ କଲା । ସେହି ଜାହାଜ ଉପରେ ସ୍ୱାଧୀନ ସ୍ପେନୀୟ ଗଣତନ୍ତ୍ରର ପତାକା ଉଡୁଥିଲା । ରାମମୋହନ ସେହି ସ୍ୱାଧୀନତାର ପତାକାକୁ ଅଭିବାଦନ କରିବାଲାଗି ଅତ୍ୟନ୍ତ ବ୍ୟଗ୍ର ହୋଇପଡ଼ିଲେ । ଦୁର୍ଭାଗ୍ୟକୁ

ସେ ସମୟରେ ତାଙ୍କର ଗୋଟିଏ ପାଦ ଜଖମ ହୋଇଯାଇଥିଲା; ଫଳରେ ସେ ସ୍ୱାଭାବିକ ଭାବରେ ଚାଲବୁଲ କରି ପାରୁନଥିଲେ । ତେଣୁ ଜାହାଜର ଜଣେ କର୍ମଚାରୀଙ୍କ କାନ୍ଧରେ ଭରାଦେଇ ଜାହାଜର ଛାତ ଉପରକୁ ଚଢ଼ି ସେ ସ୍ପେନ ଦେଶର ଏଇ ସ୍ୱାଧୀନତାର ପତାକାକୁ ନମସ୍କାର କରି ମଣିଷଜାତିର ସ୍ୱାଧୀନତା ପ୍ରତି ତାଙ୍କର ଆନ୍ତରିକ ସମର୍ଥନ ନିଃସନ୍ଦେହରେ ଅଭିବ୍ୟକ୍ତ କଲେ ।

## ସମ୍ବାଦପତ୍ର ଓ ମୁଦ୍ରାଯନ୍ତ୍ରର ସ୍ୱାଧୀନତା

ରାମମୋହନଙ୍କ ସମୟରେ ଉନ୍ନତ ପାଶ୍ଚାତ୍ୟ ଦେଶଗୁଡ଼ିକରେ ସମ୍ବାଦପତ୍ରର ପ୍ରଚଳନ ଆରମ୍ଭ ହୋଇଯାଇଥିଲା । ଏହି ପତ୍ରିକାଗୁଡ଼ିକ ବିଭିନ୍ନ ବିଷୟରେ ଦେଶବାସୀଙ୍କ ମତାମତ ବ୍ୟକ୍ତ କରିବା ସଙ୍ଗେ ସଙ୍ଗେ ସରକାରଙ୍କର ଭୁଲ ନୀତିଗୁଡ଼ିକର ସମାଲୋଚନା କରି ସରକାରୀ କଳକୁ ବିପଥଗାମୀ ହେବାକୁ ଦେଉ ନଥିଲେ । ପ୍ରଗତିକାମୀ ରାମମୋହନ ସଂପୂର୍ଣ୍ଣ ରୂପେ ନିଜ ଚେଷ୍ଟାରେ ୧୮୨୧ ଖ୍ରୀଷ୍ଟାବ୍ଦ, ଡିସେମ୍ବର ୪ ତାରିଖଠାରୁ ବଙ୍ଗଳା ଭାଷାରେ 'ସମ୍ବାଦ-କୌମୁଦୀ' ନାମରେ ଏକ ସାପ୍ତାହିକ ପତ୍ରିକା ପ୍ରକାଶ କରିବାକୁ ଲାଗିଲେ । ଏହି ପତ୍ରିକାରେ ଧର୍ମ, ସମାଜ ଓ ରାଜନୀତି ସଂକ୍ରାନ୍ତ ବିଭିନ୍ନ ଆଲୋଚନା ସ୍ଥାନ ପାଇଥିଲା ।

ସେ ସମୟରେ ଫାର୍ସୀ ରାଜଭାଷା-ସମ୍ମାନରୁ ବିଚ୍ୟୁତ ହୋଇ ସୁଦ୍ଧା ନିଜର ଜନପ୍ରିୟତା ହରାଇନଥିଲା ଏବଂ ଅଧିକାଂଶ ଅଭିଜାତ ବ୍ୟକ୍ତି ଫାର୍ସୀ ଅଧ୍ୟୟନ ଉପରେ ବିଶେଷ ଗୁରୁତ୍ୱ ଦେଉଥିଲେ । ତା ଛଡ଼ା ଏ ଦେଶବାସୀ ଅଧିକାଂଶ ମୁସଲମାନଙ୍କୁ ବଙ୍ଗଳା ଭାଷା ଜଣା ନଥିଲା । ତେଣୁ ଏମାନଙ୍କ ମଧ୍ୟରେ ଜାଗରଣ ଓ ଆନ୍ଦୋଳନ

ସୃଷ୍ଟି କରିବା ଲାଗି, ଅଳ୍ପଦିନ ପରେ ୧୮୨୪ ଖ୍ରୀଷ୍ଟାବ୍ଦରୁ ରାମମୋହନ 'ମିରାଟ-ଅଲ୍-ଆକ୍ବର' ନାମରେ ଏକ ଫାର୍ସୀ ସାପ୍ତାହିକର ପ୍ରକାଶନ ଆରମ୍ଭ କଲେ । ଏହି ପତ୍ରିକା ତତ୍କାଳୀନ ଅଭିଜାତ ସମ୍ପ୍ରଦାୟ ଉପରେ ବିଶେଷ ପ୍ରଭାବ ପକାଇପାରିଥିଲା ।

ରାମମୋହନ ଅତ୍ୟନ୍ତ ନିର୍ଭୀକ ଥିବା ଯୋଗୁଁ ଏଇ ଉଭୟ ପତ୍ରିକାରେ ସେ ଖ୍ରୀଷ୍ଟାନ୍ ପାଦ୍ରୀମାନଙ୍କର ଅଳୀକ ଓ ଅଯୌକ୍ତିକ ପ୍ରଚାର ଏବଂ ସରକାରଙ୍କର ବିଭିନ୍ନ ଦୋଷତ୍ରୁଟି ବିଷୟ ଖୋଲାଖୋଲି ପ୍ରକାଶ କରୁଥିଲେ । କହିବା ବାହୁଲ୍ୟ ଯେ, ଏହା ପଦସ୍ଥ ରାଜପୁରୁଷମାନଙ୍କ ପକ୍ଷରେ ପ୍ରୀତିପ୍ରଦ ହୋଇନଥିଲା । ପରୋକ୍ଷରେ ତାହାଁର ସୂଚନା ପାଇ ସୁଦ୍ଧା ରାମମୋହନ ନିଜର ମତାମତ ପ୍ରକାଶ କରିବାରୁ ନିବୃତ୍ତ ହୋଇନଥିଲେ ।

ଏହି ସମୟରେ ଜନ୍ ବକିଂହାମ୍ (**John Buckingham**) ବୋଲି ଜଣେ ଇଂରେଜ ସାମ୍ବାଦିକ କଲିକତାରୁ 'କ୍ୟାଲକାଟା ଜର୍ଣ୍ଣାଲ୍' ନାମରେ ଗୋଟିଏ ଇଂରାଜୀ ସାପ୍ତାହିକ ପ୍ରକାଶ କଲେ । ରାମମୋହନଙ୍କର ସୁଚିନ୍ତିତ ଓ ଯୁକ୍ତିଯୁକ୍ତ ମତାମତକୁ ବକିଂହାମ୍ ସାହେବ ଖୁବ୍ ପସନ୍ଦ କରୁଥିଲେ ଏବଂ ନିୟମିତ ରୂପେ ତାଙ୍କର 'କ୍ୟାଲକାଟା ଜର୍ଣ୍ଣାଲ୍'ରେ ରାମମୋହନଙ୍କ ଲିଖିତ ଗୋଟିଏ ଦୁଇଟି ପ୍ରବନ୍ଧର ଇଂରାଜୀ ଅନୁବାଦ ପ୍ରକାଶ କରୁଥିଲେ । ବକିଂହାମ୍ ସାହେବ ଏପରି ନିରପେକ୍ଷ ଥିଲେ ଯେ, ଆପେ ଖ୍ରୀଷ୍ଟାନ୍ ହୋଇ ସୁଦ୍ଧା ରାମମୋହନଙ୍କ ଲିଖିତ ଖ୍ରୀଷ୍ଟାନ୍ ପାଦ୍ରୀମାନଙ୍କର ଭ୍ରାନ୍ତ ପ୍ରଚାରର ସମାଲୋଚନାକୁ ମଧ୍ୟ ନିଜ ପତ୍ରିକାରେ ସ୍ଥାନ ଦେଉଥିଲେ ।

ଯେତେବେଳେ ଇଂଲଣ୍ଡରେ ମୁଦ୍ରାଯନ୍ତ୍ରର ସ୍ୱାଧୀନତା ସ୍ୱୀକୃତ ହୋଇଥିଲେ ସୁଦ୍ଧା ଭାରତର ଇଂରେଜ ରାଜପୁରୁଷମାନେ ଭାରତୀୟ-

ମାନଙ୍କୁ ସେହି ସ୍ୱାଧୀନତା ଦେବାର ବିଶେଷ ପକ୍ଷପାତୀ ନ ଥିଲେ । ଲର୍ଡ଼ ଓ୍ୱେଲେସଲି, ଲର୍ଡ଼ ମିଣ୍ଟୋ, ଲର୍ଡ଼ ହେଷ୍ଟିଂସ ପ୍ରଭୃତି ଭାରତର ବଡ଼ଲାଟଗଣ ମୁଦ୍ରାଯନ୍ତ୍ରର ସ୍ୱାଧୀନତା ଉପରେ ପରୋକ୍ଷ ଚାପ ପକାଉଥିଲେ ସୁଦ୍ଧା ସରକାରୀ ଭାବରେ କୌଣସି କାର୍ଯ୍ୟାନୁଷ୍ଠାନ ଗ୍ରହଣ କରିନଥିଲେ ।

୧୮୨୨ ଡ଼ିସେମ୍ବର ମାସରେ ଲର୍ଡ଼ ହେଷ୍ଟିଂସ ଅବସର ଗ୍ରହଣ କରି ଇଂଲଣ୍ଡ ଫେରିଯିବା ପରେ ମିଷ୍ଟର ଆଡ଼ାମ ନାମକ ଜଣେ ଇଂରେଜ ସାମୟିକ ଭାବରେ ବଡ଼ଲାଟ ନିଯୁକ୍ତ ହୋଇଥିଲେ । ସେ ଥିଲେ ମୁଦ୍ରାଯନ୍ତ୍ର-ସ୍ୱାଧୀନତା'ର ଘୋର ବିରୋଧୀ । ଡକ୍ଟର ବ୍ରାଇସ ନାମକ ଜଣେ ଇଂରେଜ ପାଦ୍ରୀ ଏହି ସମୟରେ ଜଣେ ଉଚ୍ଚପଦସ୍ଥ ସରକାରୀ କର୍ମଚାରୀ ରୂପେ ନିଯୁକ୍ତି ପାଇଲେ । ଧର୍ମଯାଜକ ଙ୍କର ଏହି ସରକାରୀ କାର୍ଯ୍ୟ ଗ୍ରହଣକୁ ରାମମୋହନ ଘୋର ବିରୋଧ କଲେ । ରାମମୋହନଙ୍କ ମତକୁ ସମର୍ଥନ କରି ବକିଂହାମ୍ ସାହେବ ଏପରି ନିଯୁକ୍ତିକୁ ନିନ୍ଦାକରି 'କ୍ୟାଲକାଟା ଜର୍ଣ୍ଣାଲ'ରେ ଗୋଟିଏ ଅଗ୍ରଲେଖ ଛାପିଲେ । ଏହି କଟୁ ସମାଲୋଚନାରେ ଉତ୍ତ୍ୟକ୍ତ ହୋଇ ଅସ୍ଥାୟୀ ବଡ଼ଲାଟ ଆଡ଼ାମ୍ ସାହେବ 'କ୍ୟାଲକାଟା ଜର୍ଣ୍ଣାଲ'ର ପ୍ରକାଶନ ଉପରେ ନିଷେଧାଜ୍ଞା ଜାରି କରିବା ସଙ୍ଗେ ସଙ୍ଗେ ଦୁଇମାସ ମଧ୍ୟରେ ଭାରତବର୍ଷ ତ୍ୟାଗ କରିବା ଲାଗି ବକିଂହାମ୍ ସାହେବଙ୍କୁ ଆଦେଶ ଦେଲେ । ଫଳରେ 'କ୍ୟାଲକାଟା ଜର୍ଣ୍ଣାଲ'ର ଅକାଳ ମୃତ୍ୟୁ ଘଟିଲା । ମାତ୍ର ଏଥିରେ ବି ସନ୍ତୁଷ୍ଟ ନ ହୋଇ ଆଡ଼ାମ୍ ସାହେବ ୧୮୨୩ ଖ୍ରୀଷ୍ଟାବ୍ଦ ମାର୍ଚ୍ଚ ୧୪ ତାରିଖ ଦିନ ଏକ ଆଇନ ପ୍ରଣୟନ କରି ଆଦେଶ ଦେଲେ ଯେ ସ୍ୱାମୀସ୍ଥ ମ୍ୟାଜିଷ୍ଟ୍ରେଟଙ୍କ ଦ୍ୱାରା ପୂର୍ବରୁ ଅନୁମୋଦିତ ନ ହେଲେ କୌଣସି ପତ୍ରିକାରେ କୌଣସି ପ୍ରବନ୍ଧ ବା ଅଗ୍ରଲେଖ ପ୍ରକାଶ ପାଇ ପାରିବ ନାହିଁ ।

ଅନ୍ୟାୟ ଭାବରେ 'କ୍ୟାଲକାଟା ଜର୍ଣ୍ଣାଲ'କୁ ବନ୍ଦ କରିଦେବା ଏବଂ ବିନାଦୋଷରେ ବକିଂହାମ୍ ସାହେବଙ୍କୁ ଏ ଦେଶରୁ ବିତାଡ଼ିତ କରିବାର ପ୍ରତିବାଦସ୍ୱରୂପ ରାମମୋହନ ତାଙ୍କର ଜନପ୍ରିୟ ଫାର୍ସୀ ପତ୍ରିକା 'ମିରାଟ-ଆଲ୍-ଆକବର' ଆଉ ପ୍ରକାଶ କଲେ ନାହିଁ । ତା ପରେ ପରେ ମୁଦ୍ରାଯନ୍ତ୍ରର ସ୍ୱାଧୀନତା-ବିରୋଧୀ ଆଇନ ପ୍ରଣୀତ ହେବାରୁ ରାମମୋହନ ଅତ୍ୟନ୍ତ କ୍ଷୁବ୍ଧ ଓ ମର୍ମାହତ ହୋଇ ଗୋଟିଏ ପ୍ରବନ୍ଧରେ ଲେଖିଲେ—"ମୁଦ୍ରାଯନ୍ତ୍ରର ସ୍ୱାଧୀନତା ଲୋପପାଇଲେ ଜାତିର ଅବନତି ଅନିବାର୍ଯ୍ୟ; ଏହା ସଙ୍ଗେ ସଙ୍ଗେ ଶିକ୍ଷାର ପଥ ମଧ୍ୟ ଅବରୁଦ୍ଧ ହେବ । ଯେଉଁ ହତଭାଗ୍ୟ ଜାତି ସରକାରଙ୍କର କୌଣସି ଦୋଷ ବା ତ୍ରୁଟି ଦେଖି ସୁଦ୍ଧା ତାହା ପ୍ରକାଶ କରିବାକୁ ଅସମର୍ଥ, ସେହି ଜାତି ମଧ୍ୟରେ କ୍ରମେ ହୀନମନ୍ୟତା ପ୍ରବେଶ କରିବ; ତାର ହୃଦୟ ଦୁର୍ବଳରୁ ଦୁର୍ବଳତର ହେବ ଏବଂ ଶେଷକୁ ସେ ମନୁଷ୍ୟତ୍ୱ ହରାଇ ପଶୁରେ ପରିଣତ ହେବ ।"

କେବଳ କ୍ଷୋଭ ପ୍ରକାଶ କରି ରାମମୋହନ କ୍ଷାନ୍ତ ହେଲେ ନାହିଁ—ସେ ସମୟର ବିଶିଷ୍ଟ ନାଗରିକ ଦ୍ୱାରକାନାଥ ଠାକୁର, ହରକୁମାର ମିତ୍ର, ଗୌରୀଚରଣ ବନ୍ଦ୍ୟୋପାଧ୍ୟାୟ ପ୍ରମୁଖଙ୍କୁ ସହଯୋଗୀ କରି ସେ ଏ ପ୍ରକାର ଅବିବେକ ତଥା କଳା ଆଇନ ବିରୁଦ୍ଧରେ ସୁପ୍ରିମ କୋର୍ଟରେ ଏକ ମାମଲା ଦାଏର କଲେ । ମାତ୍ର ସୁପ୍ରିମ କୋର୍ଟ ଏଇ ଆବେଦନକୁ ଅଗ୍ରାହ୍ୟ କରିବାରୁ, ସେ ଏ ବିଷୟର ପୁନର୍ବିବେଚନା ଓ ପ୍ରତିକାର ଲୋର୍ଡ଼ ବଡ଼ଲାଟଙ୍କ ନିକଟରେ ନିବେଦନ କଲେ । ବଡ଼ଲାଟ ସ୍ୱୟଂ ଏଇ ଆଇନର ସମର୍ଥକ ଥିବାରୁ ସେ ରାମମୋହନଙ୍କ ନିବେଦନ ଉପରେ କୌଣସି ଗୁରୁତ୍ୱ ଦେଲେ ନାହିଁ । ତଥାପି ହତୋତ୍ସାହ ନ ହୋଇ ରାମମୋହନ ତତ୍କାଳୀନ ଇଂଲଣ୍ଡେଶ୍ୱର ଚତୁର୍ଥ ଜର୍ଜଙ୍କ ନିକଟରେ ଭାରତବାସୀଙ୍କ ପକ୍ଷରୁ ଏକ ଆବେଦନପତ୍ର ପେସ୍ କଲେ ଏବଂ

ପରେ ଇଂଲଣ୍ଡ ଯାଇ ଏ ବିଷୟ ବହୁ ବିଶିଷ୍ଟ ଇଂଲଣ୍ଡବାସୀଙ୍କୁ ବୁଝାଇଥିଲେ । ଅଳ୍ପଦିନ ପରେ ରାମମୋହନଙ୍କର ଦେହାନ୍ତ ହୋଇଗଲା; ମାତ୍ର ତାଙ୍କର ଆପ୍ରାଣ ତଥା ଆନ୍ତରିକ ଉଦ୍ୟମ ଯୋଗୁଁ ୧୮୩୫ ଖ୍ରୀଷ୍ଟାବ୍ଦରେ, ଅର୍ଥାତ୍ ରାମମୋହନଙ୍କ ମୃତ୍ୟୁର ଦୁଇବର୍ଷ ପରେ, ଲର୍ଡ଼ ମେଟକାଫ୍ ଭାରତର ବଡ଼ଲାଟ ଥିବା ସମୟରେ ଏହି ଅବାଞ୍ଛିତ ନିଷେଧାଦେଶ ପ୍ରତ୍ୟାହୃତ ହୋଇ 'ମୁଦ୍ରାଯନ୍ତ୍ରର ସ୍ୱାଧୀନତା ଆଇନ' ବିଧିବଦ୍ଧ ହେଲା । ଆଜି ସ୍ୱାଧୀନ ସାମ୍ବାଦିକତାର ମୂଲ୍ୟ ଅନେକେ ହୃଦ୍‌ବୋଧ କଲେଣି; ମାତ୍ର ଦେଢ଼ଶହ ବର୍ଷ ପୂର୍ବେ ସମ୍ବାଦପତ୍ରର ସ୍ୱାଧୀନତା ଲାଗି ଆନ୍ଦୋଳନ କରିଥିବା ବ୍ୟକ୍ତିଙ୍କର ଦୂରଦୃଷ୍ଟି ବାସ୍ତବରେ ବିସ୍ମୟଜନକ ।

## କୃଷକମାନଙ୍କ ଦୁଃଖ ଦୂର କରିବାର ଉଦ୍ୟମ

୧୭୯୩ ଖ୍ରୀଷ୍ଟାବ୍ଦରେ 'ଚିରସ୍ଥାୟୀ ବନ୍ଦୋବସ୍ତ' ଫଳରେ ଜମି ଉପରେ ଜମିଦାର ଓ ଜମିମାଲିକ ବା ଜୋତଦାରମାନଙ୍କର ଅଖଣ୍ଡ ଅଧିକାର ଉପୁଜିଥିଲା । ଧାର୍ଯ୍ୟ ଖଜଣା ନିର୍ଦ୍ଦିଷ୍ଟ ସମୟରେ ମିଳିଗଲେ ବ୍ରିଟିଶସରକାର ଏମାନଙ୍କର କୌଣସି କ୍ରିୟାକଳାପରେ ହସ୍ତକ୍ଷେପ କରୁନଥିଲା । ଅଖଣ୍ଡ ମାଲିକାନା ମିଳିଯିବାରୁ ଅଧିକାଂଶ ଜମିଦାର ଓ ଜମିମାଲିକ ଗରିବ କୃଷକମାନଙ୍କଠାରୁ ଆଖିବୁଜା ଅର୍ଥ-ଶୋଷଣ ଆରମ୍ଭ କରିଦେଲେ । କୃଷୀ ବିଚରା ପେଟପୂରା ଗଣ୍ଡାଏ ଖାଇବାକୁ ସୁଦ୍ଧା ପାଉନଥିଲା ।

ଯେତେବେଳେ ଇଷ୍ଟ ଇଣ୍ଡିଆ କମ୍ପାନୀ ଭାରତ ଶାସନ କରିବା ଲାଗି ଇଂଲଣ୍ଡ ରାଜାଙ୍କଠାରୁ ସନନ୍ଦ ପାଉଥିଲା । ଉକ୍ତ ସନନ୍ଦର

ଆୟୁକାଳ ଦଶ ବର୍ଷ ଥିଲା ଏବଂ ତନ୍ମଧ୍ୟରେ ଅନ୍ୟତମ ସର୍ତ୍ତ ଥିଲା, ଯେ କମ୍ପାନୀ ସୁ-ଶାସନ କରି ନ ପାରିଲେ ଦଶବର୍ଷ ପରେ ଆଉ ନୂଆ ସନନ୍ଦ ଦିଆଯିବ ନାହିଁ । ତେଣୁ ନୂଆ ସନନ୍ଦ ଦିଆଯିବା ପୂର୍ବରୁ କମ୍ପାନୀର ଶାସନ ସମ୍ପର୍କରେ ବିଲାତ ପାର୍ଲାମେଣ୍ଟର ଗୋଟିଏ କମିଟି ବହୁ ବିଶିଷ୍ଟ ଇଂରେଜ ଓ ଭାରତୀୟ ନାଗରିକଙ୍କଠାରୁ ସାକ୍ଷ୍ୟ ଗ୍ରହଣ କରୁଥିଲେ । ରାମମୋହନ ଇଂଲଣ୍ଡରେ ଥିବା ସମୟରେ ୧୮୩୧ ଖ୍ରୀଷ୍ଟାବ୍ଦରେ ଏହି କମିଟି ତାଙ୍କୁ ସାକ୍ଷ୍ୟ ଦେବାଲାଗି ଆମନ୍ତ୍ରଣ କରିଥିଲା । ରାମମୋହନ ସେହି ଆମନ୍ତ୍ରଣ ଗ୍ରହଣ କରିଥିଲେ ସତ; ମାତ୍ର ନିଜେ ସେହି କମିଟି ଆଗରେ ଉପସ୍ଥିତ ନ ହୋଇ ସେ ସମ୍ପର୍କରେ ତାଙ୍କର ମତାମତ ଲିଖିତ ଆକାରରେ ପଠାଇ ଦେଇଥିଲେ । ସେହି ସାକ୍ଷ୍ୟରେ, ଭାରତର କୃଷକମାନଙ୍କର ଅବସ୍ଥା ସମ୍ପର୍କରେ ରାମମୋହନ ଲେଖିଥିଲେ—"୧୭୯୩ ମସିହାର ଚିରସ୍ଥାୟୀ ବନ୍ଦୋବସ୍ତ ଦ୍ୱାରା କେବଳ ଜମିଦାର ଓ ଭୂମିମାଲିକ-ମାନେ ଉପକୃତ ହୋଇଛନ୍ତି । ସେମାନଙ୍କର ବ୍ୟକ୍ତିଗତ ସମ୍ପତ୍ତି ଯଥେଷ୍ଟ ବୃଦ୍ଧି ପାଇଛି । ମାତ୍ର ଅଗଣିତ କୃଷକଙ୍କ ଅବସ୍ଥା ଟିକିଏ ହେଲେ ବଦଳି ନାହିଁ; ବରଂ ଖରାପଆଡ଼କୁ ଯାଇଛି । ଏହାର ପ୍ରତିକାର ଲାଗି କୃଷକମାନଙ୍କ ଉପରୁ ଅନ୍ୟାୟ ଓ ଅତ୍ୟଧିକ କର ଆଦାୟ ବନ୍ଦକରିବା ଉଚିତ । କରଭାର ଅସହ୍ୟ ହେଲାଣି ବୋଲି କୃଷକମାନେ ଚରମ ଦାରିଦ୍ର୍ୟ ଭୋଗୁଛନ୍ତି । ଏଣୁ ତୁରନ୍ତ କର-ହ୍ରାସ ଏକାନ୍ତ ଉଚିତ । ଏହା କରିପାରିବା ଲାଗି ଜମିଦାର ଓ ଜମିମାଲିକମାନଙ୍କ ଉପରେ ବି ପ୍ରଚଳିତ ରାଜସ୍ୱ କେତେକାଂଶରେ କମାଇଦେବା ଉଚିତ । ଏହା ଫଳରେ ଯେଉଁ ପରିମାଣ ସରକାରୀ ଆୟ କମିଯିବ, ବିଳାସଦ୍ରବ୍ୟାଦି ଉପରେ ଅଧିକା କର ବସାଇ ଏବଂ ଉଚ୍ଚ ବେତନଭୋଗୀ ଇଂରେଜ ହାକିମଙ୍କ ପରିବର୍ତ୍ତେ ଅଳ୍ପ

ବେତନଭୋଗୀ ଭାରତୀୟ ହାକିମ ନିଯୁକ୍ତ କରି ସେହି କ୍ଷତିକୁ ବହୁ-ପରିମାଣରେ ପୂରଣ କରାଯାଇପାରିବ । × × × ଚିରସ୍ଥାୟୀ ବନ୍ଦୋବସ୍ତ ଫଳରେ ସରକାର ଅତି ଉଚ୍ଚ ହାରରେ ରାଜସ୍ୱ ଧାର୍ଯ୍ୟ କରିଛନ୍ତି । ଜମିମାଲିକମାନେ ବି ଅନାବାଦୀ ଜମି ଚାଷ କରି ପ୍ରଚୁର ପରିମାଣ ଶସ୍ୟ ଉତ୍ପାଦନ କରୁଛନ୍ତି । ସରକାର ବି ଏହି ବଳକା ଶସ୍ୟ ବିଦେଶକୁ ରପ୍ତାନି କରାଇ, ରପ୍ତାନି ଶୁଳ୍କ ବାବଦକୁ ପ୍ରଚୁର ଅର୍ଥ ପାଉଛନ୍ତି । ମାତ୍ର ନିରୀହ କୃଷକମାନେ ଅକଥ୍ୟ ଦାରିଦ୍ର୍ୟରେ ପଡ଼ୁଛନ୍ତି ।" ଉପରୋକ୍ତ ଲେଖାରୁ ସ୍ପଷ୍ଟ ଦେଖାଯାଉଛି ଯେ, ସ୍ୱାଧୀନତାଲାଭ ପରେ ଭାରତ ସରକାର କୃଷକକୁ ଜମି-ମାଲିକ କରିବା, ଭୂ-ରାଜସ୍ୱ ଉଠାଇଦେବା ପ୍ରଭୃତି ଯେଉଁ ସମାଜବାଦୀ କାର୍ଯ୍ୟମାନ କରିଛନ୍ତି, ତାହାର ମୂଳଦୁଆ ମଧ୍ୟ ପକାଇଥିଲେ ରାଜା ରାମମୋହନ ରାୟ । ପୁଣି ଭାରତୀୟମାନଙ୍କୁ ଶାସନକ୍ଷମତା ହସ୍ତାନ୍ତର କରିବାର କଳ୍ପନା ମଧ୍ୟ ରାମମୋହନ ହିଁ ସର୍ବପ୍ରଥମେ କରିଥିଲେ ।

## ଜୁରି ବିଚାର

୧୮୨୭ ଖ୍ରୀଷ୍ଟାବ୍ଦରୁ ପୂର୍ବ-ପ୍ରଚଳିତ କାଜି ବିଚାରପଦ୍ଧତି ପରିବର୍ତ୍ତିତ ହୋଇ ଏ ଦେଶରେ 'ଜୁରିବିଚାର' ପ୍ରଚଳନ କରାଗଲା । ଇଂଲଣ୍ଡରେ ପ୍ରଚଳିତ ପ୍ରଥା ଅନୁସାରେ ବିଚାର ଇଲାକା ଅନ୍ତର୍ଭୁକ୍ତ ବାସିନ୍ଦାଙ୍କ ମଧ୍ୟରୁ କେଇଜଣ ବିଶିଷ୍ଟ ତଥା ନିର୍ମଳ ଚରିତ୍ର ବ୍ୟକ୍ତିଙ୍କୁ ନେଇ 'ଜୁରିମଣ୍ଡଳୀ' ଗଠନ କରିବାର କଥା । ମାତ୍ର ୧୮୨୭ର ଭାରତୀୟ ଜୁରି ଆଇନ ଅନୁସାରେ ଇଂରେଜ ବା ଭାରତୀୟ ଖ୍ରୀଷ୍ଟାନ ବ୍ୟତୀତ ଆଉ କୌଣସି ସମ୍ପ୍ରଦାୟର ବ୍ୟକ୍ତି ଜୁରି ନିର୍ବାଚିତ

ହୋଇପାରୁ ନ ଥିଲେ । ଏହାଦ୍ୱାରା ଏକ ପକ୍ଷରେ ହିନ୍ଦୁ ଓ ମୁସଲମାନମାନଙ୍କୁ ହେୟ ଏବଂ ଅଯୋଗ୍ୟ ପ୍ରତିପନ୍ନ କରିବା ସଙ୍ଗେ ସଙ୍ଗେ ହିନ୍ଦୁ ବା ମୁସଲମାନ ପ୍ରଥା ସଂପୃକ୍ତଥିବା ମକଦ୍ଦମାଗୁଡ଼ିକର ସୁବିଚାର ସମ୍ଭବ ହେଉ ନ ଥିଲା । ରାମମୋହନ ଏପରି ଅଯୌକ୍ତିକ ଓ ପକ୍ଷପାତମୂଳକ ଆଇନ୍‌ର ଘୋର ବିରୋଧ କରି ଭାରତର ବଡ଼ଲାଟ ଏବଂ ଇଂଲଣ୍ଡର ରାଜାଙ୍କ ନିକଟରେ ଏହାର ପରିବର୍ତ୍ତନ ଦାବି କରିଥିଲେ । ଏହି ଆନ୍ଦୋଳନ ଫଳରେ ୧୮୩୮ ଖ୍ରୀଷ୍ଟାବ୍ଦରୁ ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ଜୁରି ନିର୍ବାଚନ ପ୍ରଥା ବିଧିବଦ୍ଧ ହେଲା ।

## ଇଂଲଣ୍ଡ ଗମନ ଓ ଦେହାନ୍ତ

ତିନିଗୋଟି ବିଶେଷ ଉଦ୍ଦେଶ୍ୟ ଲାଗି ରାମମୋହନ ଇଂଲଣ୍ଡ ଯାତ୍ରା କରିଥିଲେ । ପ୍ରଥମ କାରଣ—ଭାରତର ଶାସନଭାର ଗ୍ରହଣ କରିଥିବା ଇଷ୍ଟଇଣ୍ଡିଆ କମ୍ପାନୀ ଦିଲ୍ଲୀର ସମ୍ରାଟ୍ ଆକବର୍‌ସର ମୈନୁଦ୍ଦୀନ ଆକବରଙ୍କ ଭରଣପୋଷଣ ନିମନ୍ତେ ବାର୍ଷିକ ବାରଲକ୍ଷ ଟଙ୍କା ମଞ୍ଜୁର କରିଥିଲେ । ସମ୍ରାଟ ନିଜର ପଦମର୍ଯ୍ୟାଦା ଓ ଆବଶ୍ୟକତା ଦୃଷ୍ଟିରୁ ଏହି ଟଙ୍କାର ପରିମାଣ ବୃଦ୍ଧି କରିବା ଲାଗି କମ୍ପାନୀକୁ ବାରମ୍ବାର ଅନୁରୋଧ କରି ନିରାଶ ହେବାରୁ, ନ୍ୟାୟ ବିଚାର ପାଇବା ନିମନ୍ତେ ଇଂଲଣ୍ଡର ରାଜାଙ୍କ ନିକଟକୁ ଜଣେ ଦୂତ ପଠାଇବା ପାଇଁ ସ୍ଥିର କଲେ । ଏହି କାର୍ଯ୍ୟ ପାଇଁ ରାମମୋହନ ରାୟଙ୍କୁ ସମ୍ରାଟ୍ ସବୁଠାରୁ ଯୋଗ୍ୟ ବ୍ୟକ୍ତି ବିଚାରି, ୧୮୩୦ ଖ୍ରୀଷ୍ଟାବ୍ଦର ଜାନୁଆରୀ ୮ ତାରିଖ ଦିନ ରାମମୋହନଙ୍କୁ ନିଜ ଦୂତ

ରୂପେ ନିଯୁକ୍ତ କରି ତାଙ୍କୁ 'ରାଜା' ଉପାଧି ପ୍ରଦାନ କଲେ । ଏଣେ ଇଷ୍ଟ ଇଣ୍ଡିଆ କମ୍ପାନି ମଧ୍ୟ ବୁଝିଥିଲେ ଯେ ସେମାନେ ଦିଲ୍ଲୀ ସମ୍ରାଟ୍‌ଙ୍କ ପ୍ରତି ଅନ୍ୟାୟ ଆଚରଣ କରିଛନ୍ତି । ଇଂଲଣ୍ଡର ରାଜା ବା ରାଜସରକାରଙ୍କୁ ଏ ବିଷୟରେ ଗୋଚର କରାଇବାର ଇଚ୍ଛା ସେମାନଙ୍କର ଆଦୌ ନଥିଲା । ତେଣୁ ରାମମୋହନଙ୍କର ଦୂତ ରୂପେ ନିଯୁକ୍ତି ଓ 'ରାଜା' ଉପାଧି ଲାଭକୁ ସେମାନେ ସ୍ୱୀକୃତି ନ ଜଣାଇ ନାନାପ୍ରକାର ବାଧା ସୃଷ୍ଟିକରି ତାଙ୍କର ବିଲାତଯାତ୍ରା ବନ୍ଦ କରିବାକୁ ଚାହିଁଥିଲେ । ମାତ୍ର ରାମମୋହନଙ୍କର ଦୃଢ଼ ମନୋବଳ ଓ ଦିଲ୍ଲୀ ସମ୍ରାଟ୍‌ଙ୍କ ପ୍ରବଳ ଚାପ ଯୋଗୁଁ ଶେଷରେ ସେମାନଙ୍କ ଦୁରଭିସନ୍ଧି ବ୍ୟର୍ଥ ହୋଇଥିଲା ।

ଦ୍ୱିତୀୟ କାରଣ—ସେ ସମୟ, ଅର୍ଥାତ୍ ୧୮୩୦ ବେଳକୁ ଇଷ୍ଟ ଇଣ୍ଡିଆ କମ୍ପାନି ପ୍ରାୟ ଅଶୀ ବର୍ଷ ପର୍ଯ୍ୟନ୍ତ ଶାସନଗାଦିରେ ଥାଇ ସୁଦ୍ଧା ଭାରତୀୟ ଜନସାଧାରଣଙ୍କର ଅବସ୍ଥା ଏବଂ ଶାସନ ବ୍ୟବସ୍ଥାର କୌଣସି ଉନ୍ନତି କରି ପାରି ନ ଥିଲେ । ତେଣୁ କମ୍ପାନି ଭାରତ-ଶାସନ ଲାଗି ପୁଣି ନୂଆ ସନନ୍ଦ ପାଇବା ପୂର୍ବରୁ ଇଂଲଣ୍ଡ ପାର୍ଲାମେଣ୍ଟ ଜରିଆରେ ଭାରତ ଶାସନ କ୍ଷେତ୍ରରେ କେତେକ ପ୍ରଗତି ଓ ସଂସ୍କାରମୂଳକ କାର୍ଯ୍ୟାନୁଷ୍ଠାନ ରାମମୋହନଙ୍କର ଏକ ବିଶେଷ ଅଭିପ୍ରାୟ ଥିଲା ।

ତୃତୀୟ କାରଣ—ସେ ସମୟରେ ଭାରତରେ ନୂଆ କରି ପ୍ରଚଳିତ ହୋଇଥିବା ସତୀଦାହ-ନିବାରଣ ଆଇନକୁ ବାତିଲ କରିବା ସକାଶେ ହିନ୍ଦୁ ସମାଜର ରକ୍ଷଣଶୀଳ ସମ୍ପ୍ରଦାୟ ଇଂଲଣ୍ଡର ସର୍ବୋଚ୍ଚ ବିଚାରାଳୟ 'ପ୍ରିଭି କାଉନ୍‌ସିଲ୍'ରେ ଏକ ଅପିଲ ପେସ୍ କରିଥିଲେ । ସତୀଦାହ-ବିରୋଧୀ ରାମମୋହନ ସେହି ମକଦ୍ଦମାର

ପ୍ରତିବାଦୀ ରୂପେ ପ୍ରିଭି କାଉନ୍‌ସିଲ ସମକ୍ଷରେ ନିଜ ବକ୍ତବ୍ୟ ବ୍ୟକ୍ତିଗତ ଭାବରେ ଜଣାଇବାକୁ ଇଚ୍ଛାକରିଥିଲେ ।

ଶେଷରେ ୧୮୩୦ ଖ୍ରୀଷ୍ଟାବ୍ଦର ନଭେମ୍ବର ୧୫ ତାରିଖ ଦିନ 'ଆଲବିୟନ' ନାମକ ଜାହାଜରେ ରାମମୋହନ କଲିକତାଠାରୁ ଇଂଲଣ୍ଡ ଯାତ୍ରାକଲେ । ସେ ସମୟରେ ଭାରତୀୟମାନେ ଇଂଲଣ୍ଡକୁ 'ମ୍ଲେଚ୍ଛ ଦେଶ' ବିଚାରୁଥିଲେ ଏବଂ ସେଠାକୁ ଗଲେ ଅଖାଦ୍ୟ ଓ ଅନାଚାରର ଯୋଗୁଁ ଧର୍ମ ନଷ୍ଟ ହେବ ବୋଲି ସେମାନଙ୍କର ବଦ୍ଧମୂଳ ବିଶ୍ୱାସ ଥିଲା । ତେଣୁ ସେମାନେ ରାମମୋହନଙ୍କର ବିଲାତଯାତ୍ରାର ଘୋର ବିରୋଧ କରିଥିଲେ । କିନ୍ତୁ ରାମମୋହନ ସେମାନଙ୍କ ବାଧା ଅଗ୍ରାହ୍ୟ କରି ନିଜର ପୋଷ୍ୟପୁତ୍ର ରାଜାରାମ, ବ୍ରାହ୍ମଣ-ପାଚକ ରାମରତନ ମୁଖୋପାଧ୍ୟାୟ ଓ ଭୃତ୍ୟ ହରିଦାସକୁ ସଙ୍ଗରେ ଧରି ଜାହାଜରେ ଚଢ଼ିଲେ । ତାଙ୍କ ସଙ୍ଗରେ ସେ ଦିଓଟି ଦୁଗ୍ଧବତୀ ଗାଈ ମଧ୍ୟ ନେଇଥିଲେ । ସେ ସମୟରେ ଇଂଲଣ୍ଡରେ ପହଞ୍ଚିବା ଲାଗି ପ୍ରାୟ ପାଞ୍ଚମାସ ସମୟ ଲାଗୁଥିଲା । ଏଇ ସମୟ ମଧ୍ୟରେ ରାମମୋହନ ଜାହାଜରେ ଦିଆଯାଉଥିବା ଖାଦ୍ୟ ଗ୍ରହଣ ନକରି ନିଜ ପାଚକ ରାନ୍ଧୁଥିବା ଖାଦ୍ୟ ଓ ଗୋଦୁଗ୍ଧ ଭକ୍ଷଣ କରୁଥିଲେ । ୧୮୩୧ ମସିହା ଏପ୍ରିଲ ୮ ତାରିଖ ଦିନ ତାଙ୍କ ଜାହାଜ ଇଂଲଣ୍ଡର ଲିଭରପୁଲ୍ ସହରଠାରେ ପହଞ୍ଚିଲା ।

ଏଠାରେ ଉଲ୍ଲେଖଯୋଗ୍ୟ ଯେ, ପ୍ରଥମ ଥର ଲାଗି ସମୁଦ୍ର-ଯାତ୍ରାରେ ଯାଉଥିବା ବ୍ୟକ୍ତିମାନଙ୍କ ମଧ୍ୟରୁ ଅଧିକାଂଶ ବ୍ୟକ୍ତି 'ସାମୁଦ୍ରିକ ପୀଡ଼ା' ନାମରେ ଅଭିହିତ ଏକ ବିଶେଷଧରଣର ପୀଡ଼ାରେ ଆକ୍ରାନ୍ତ ହୁଅନ୍ତି । ଏହି ପୀଡ଼ାରେ ମୁଣ୍ଡ ଘୂରିବା ଭାବରେ

ଝୁଲଇବା ସଙ୍ଗେ ସଙ୍ଗେ ଘନ ଘନ ବାନ୍ତି ହୁଏ । 'ଆଲବିୟନ' ଜାହାଜ ସମୁଦ୍ରଯାତ୍ରା ଆରମ୍ଭ କରିବାର କେଇ ଦିନ ପରେ ରାମମୋହନଙ୍କର ପାଚକ ଓ ଭୃତ୍ୟ ଏଇ ସମୁଦ୍ର ପୀଡ଼ାରେ ଆକ୍ରାନ୍ତ ହେଲେ । ରାମମୋହନ ଓ ତାଙ୍କର ପୋଷ୍ୟପୁତ୍ର ରାଜାରାମ ପ୍ରଥମ-ଶ୍ରେଣୀର କ୍ୟାବିନ୍‌ରେ ଏବଂ ତାଙ୍କର ପାଚକ ଓ ଭୃତ୍ୟ ସାଧାରଣ ଯାତ୍ରୀ କ୍ୟାବିନ୍‌ରେ ଯାଉଥିଲେ । ରାମମୋହନଙ୍କ ହୃଦୟ ଏପରି ମହତ୍ତ୍ୱ ଓ ମାନବୀୟ ଥିଲ ଯେ, ରୋଗାକ୍ରାନ୍ତ ପାଚକ ଓ ଭୃତ୍ୟଙ୍କୁ ଯଥାସାଧ୍ୟ ଆରାମ ଦେବା ଲାଗି ସେମାନଙ୍କୁ ନିଜର ପ୍ରଥମ ଶ୍ରେଣୀର କ୍ୟାବିନକୁ ସ୍ଥାନାନ୍ତରିତ କରି, ସେମାନେ ସଂପୂର୍ଣ୍ଣ ରୋଗମୁକ୍ତ ନ ହେବା ପର୍ଯ୍ୟନ୍ତ ପୋଷ୍ୟପୁତ୍ର ରାଜାରାମଙ୍କୁ ସଙ୍ଗରେ ଧରି ରାମମୋହନ ସାଧାରଣ ଯାତ୍ରୀ କ୍ୟାବିନ୍‌ରେ ଅବସ୍ଥାନ କଲେ । କେବଳ ଏତିକି ନୁହେଁ—ଏହି ସମୟରେ ନିଜ ଖାଦ୍ୟ ପ୍ରସ୍ତୁତ କରିବା ବ୍ୟତୀତ, ରାମମୋହନ ଅସୁସ୍ଥ ପାଚକ ଓ ଭୃତ୍ୟ ଲାଗି ନିଜେ ପଥ୍ୟ ପ୍ରସ୍ତୁତ କରି ପ୍ରତିଦିନ ସ୍ୱହସ୍ତରେ ସେମାନଙ୍କୁ ଖୁଆଉଥିଲେ । ରାଜାରାମ ଲିପିବଦ୍ଧ କରିଥିବା ଦିନପଞ୍ଜିକା (diary) ରୁ ଜଣାଯାଏ ଯେ ଜାହାଜ-ଯାତ୍ରାର ଏଇ ପାଞ୍ଚମାସ କାଳର ଅଧିକାଂଶ ସମୟ ରାମମୋହନ ଗ୍ରୀକ୍ ଓ ହିବ୍ରୁ ଭାଷାରେ ଲିଖିତ ବିଖ୍ୟାତ ଗ୍ରନ୍ଥ ଓ ଶାସ୍ତ୍ର ପଢ଼ିବାରେ ବ୍ୟୟକରୁଥିଲେ ।

## ବିଦେଶରେ ବିପୁଳ ସମ୍ବର୍ଦ୍ଧନା

ଆମର ଗୋଟିଏ ଜଣାଶୁଣା ପ୍ରବାଦ-ବାକ୍ୟ ଅଛି : 'ଗାଁ କନିଆ ସିଂଘାଣିନାକୀ' । ହିନ୍ଦୁ ଧର୍ମର ସୁରକ୍ଷା ଲାଗି ରାମମୋହନ ଖ୍ରୀଷ୍ଟାନ

ପାଦ୍ରୀମାନଙ୍କ ଅପପ୍ରଚାରର ବିରୁଦ୍ଧରେ ସଂଗ୍ରାମ ଚଳାଉଥିଲେ । ମାର୍ଶ୍ ଆଶ୍ଚର୍ଯ୍ୟର ବିଷୟ ଯେ, ନିଜ ଦେଶବାସୀଙ୍କ ଦ୍ୱାରା ଅନ୍ୟାୟ ଭାବରେ ନିନ୍ଦିତ ଓ ସମାଲୋଚିତ ରାମମୋହନ, ସେଇ ଖ୍ରୀଷ୍ଟାନ ଦେଶର ଅଧିବାସୀମାନଙ୍କଠାରୁ ଲାଭ କରିଥିଲେ ଉଚ୍ଛ୍ୱସିତ ସମ୍ବର୍ଦ୍ଧନା ଓ ସମ୍ମାନ ।

ଲିଭରପୁଲ୍ ବନ୍ଦରରେ ଓହ୍ଲାଇ ଇଂଲଣ୍ଡର ରାଜଧାନୀ ଲଣ୍ଡନ୍ ଯିବା ପୂର୍ବରୁ ରାମମୋହନ ବିଶ୍ୱ-ବିଖ୍ୟାତ ଶିଳ୍ପନଗରୀ ମ୍ୟାନ୍‌ଚେଷ୍ଟର ପରିଦର୍ଶନ କରିଥିଲେ । ରାଜା ରାମମୋହନଙ୍କ ନାମ ଇଂଲଣ୍ଡରେ ଏପରି ସମ୍ମାନ ଓ ଜନପ୍ରିୟତା ଅର୍ଜନ କରିଥିଲା ଯେ, ସେ ଆସିଛନ୍ତି ଶୁଣି ସେଠାରେ ଥିବା ବଡ଼ ବଡ଼ କାରଖାନାଗୁଡ଼ିକର କାମ ବନ୍ଦ ରଖି ତାଙ୍କ ଦର୍ଶନ ସକାଶେ ଅଗଣିତ ନରନାରୀ ସେ ଯିବା ସଡ଼କର ଦୁଇ ଧାରରେ ପ୍ରବଳ ଭିଡ଼ ସୃଷ୍ଟି କରିଥିଲେ । ତାଙ୍କୁ ଦେଖିବାମାତ୍ରେ ଧନୀ-ଦରିଦ୍ର-ପୁରୁଷ ସ୍ତ୍ରୀ-ନିର୍ବିଶେଷରେ ହଜାର ହଜାର ଶ୍ରଦ୍ଧାଶୀଳ ମଣିଷ ତାଙ୍କ ସହିତ କରମର୍ଦ୍ଦନ କରିବା ଲାଗି ଧାଇଁ ଆସିଥିଲେ । ଅତ୍ୟଧିକ ଜନସମାଗମ ଯୋଗୁଁ କେତେକ ସ୍ଥାନରେ ଆଗକୁ ଯିବା ସକାଶେ ତାଙ୍କୁ ପୁଲିସ୍‌ର ସାହାଯ୍ୟ ମଧ୍ୟ ନେବାକୁ ପଡ଼ିଥିଲା । ଉପସ୍ଥିତ ଜନତାର ଏକାନ୍ତ ଆଗ୍ରହ ଯୋଗୁଁ ରାମମୋହନ ନିଜ ଯାତ୍ରା-ପଥରେ ସ୍ଥାନେ ସ୍ଥାନେ ଛିଡ଼ାହୋଇ ଭାରତର ଆଧ୍ୟାତ୍ମିକତା ଓ ସଂସ୍କୃତି ସମ୍ବନ୍ଧରେ ସଂକ୍ଷିପ୍ତ ବକ୍ତୃତାମାନ ମଧ୍ୟ ଦେଉଥିଲେ । ଏହିପରି ମନ୍ଥର ଗତିରେ ଯାତ୍ରା କରି ଗଭୀର ରାତିରେ ଲଣ୍ଡନରେ ପହଞ୍ଚି ରାମମୋହନ ସ୍ଥାନୀୟ ପ୍ରସିଦ୍ଧ ହୋଟେଲ 'ଆଡ଼େଲଫିରେ ଅବସ୍ଥାନ କଲେ । ଏଇ ବିଳାସପୂର୍ଣ୍ଣ

ହୋଟେଲରେ ରହି ମଧ୍ୟ ରାମମୋହନ ସେଠାକାର ଖାଦ୍ୟ ଗ୍ରହଣ ନକରି ନିଜ ପାଚକଦ୍ୱାରା ପ୍ରସ୍ତୁତ ଆହାର୍ଯ୍ୟ ଗ୍ରହଣ କରୁଥିଲେ ।

ରାମମୋହନ ଲିଭରପୁଲ୍‌ରେ ପହଞ୍ଚିବା ସମୟରେ ବିଶ୍ୱବିଖ୍ୟାତ ପଣ୍ଡିତ ଓ ଐତିହାସିକ ଉଇଲିଅମ ରସ୍କୋ (William Rusko) ପକ୍ଷାଘାତ ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ଥିଲେ । ରୋଗର ଗୁରୁତ୍ୱ ଦୃଷ୍ଟିରୁ ସେ କୌଣସି ଲୋକ ସହିତ ସାକ୍ଷାତ କରିବେ ନାହିଁ ବୋଲି ତାଙ୍କର ଚିକିତ୍ସକମାନେ ନିର୍ଦ୍ଦେଶ ଦେଇଥିଲେ । ମାତ୍ର ରାମମୋହନ ଲିଭରପୁଲ୍‌ରେ ପହଞ୍ଚିଛନ୍ତି ଜାଣିପାରି ରସ୍କୋ ନିଜ ପୁଅ ହାତରେ ତାଙ୍କୁ ସାକ୍ଷାତ୍ ଲାଗି ନିମନ୍ତ୍ରଣ ଜଣାଇଲେ । ରାମମୋହନ ଏହି ନିମନ୍ତ୍ରଣ ଗ୍ରହଣ କରି ପରଦିନ ରସ୍କୋଙ୍କ ସହିତ ସାକ୍ଷାତ ଲାଗି ତାଙ୍କ ବାସଭବନକୁ ଯାଇଥିଲେ । ସେଠି ପହଞ୍ଚି ରୋଗ ଶଯ୍ୟାରେ ଶାୟିତ ପ୍ରସିଦ୍ଧ ପଣ୍ଡିତଙ୍କୁ ଭାରତୀୟ ପ୍ରଥାରେ ନମସ୍କାର କରି ରାମମୋହନ କହିଲେ, "ପୃଥିବୀ ସାରା ଯଶ ଲାଭ କରିଥିବା ବ୍ୟକ୍ତିଙ୍କୁ ଦର୍ଶନ କରି ଆଜି ମୁଁ ଆନନ୍ଦ ଓ ଗର୍ବ ଅନୁଭବ କରୁଛି ।" ରସ୍କୋ ବି ଆବେଗ-ବିହ୍ୱଳ ସ୍ୱରରେ ଉତ୍ତର ଦେଲେ, "ଆପଣଙ୍କୁ ଦେଖିପାରିବା ପାଇଁ ଆଜିଯାଏ ଏପରି ଅବସ୍ଥାରେ ବି ମୁଁ ଜୀବିତ ରହିଛି, ତା ପାଇଁ ପରମେଶ୍ୱରଙ୍କୁ ଅଜସ୍ର ଧନ୍ୟବାଦ ଜଣାଉଛି ।" ରସ୍କୋଙ୍କ ଅସୁସ୍ଥତା ଯୋଗୁଁ ଏହି ଦୁଇ ବିଖ୍ୟାତ ପଣ୍ଡିତଙ୍କ ମଧ୍ୟରେ କୌଣସି ଗମ୍ଭୀର ବା ଉଲ୍ଲେଖଯୋଗ୍ୟ ଆଲୋଚନା ହୋଇ ପାରିଲାନାହିଁ ।

ଏହି ସମୟରେ ଇଂଲଣ୍ଡର ପାର୍ଲାମେଣ୍ଟରେ ବିଖ୍ୟାତ ଶାସନ-ସଂସ୍କାର (Reforms) ବିଲ୍ ଆଲୋଚିତ ହେବାର ଥିଲା । ରାମମୋହନ ସେହି ଆଲୋଚନା ଶୁଣି ପାରିବେ ବୋଲି ପାର୍ଲାମେଣ୍ଟର

ଲର୍ଡ଼ ସଭା (House of Lords) ର ବିଶିଷ୍ଟ ସଭ୍ୟ ଲର୍ଡ଼ ବ୍ରୁହାମ୍ ଏହିଠାରେ ରାମମୋହନଙ୍କୁ ଭେଟି ପାର୍ଲାମେଣ୍ଟ ଅଧିବେଶନରେ ଉପସ୍ଥିତ ରହିପାରିବା ଲାଗି ତାଙ୍କୁ ଗୋଟିଏ ପ୍ରବେଶପତ୍ର ପ୍ରଦାନ କରିଥିଲେ ।

## ବିଶିଷ୍ଟ ବ୍ୟକ୍ତିମାନଙ୍କ ସହିତ ସମ୍ପର୍କ

ବିଶ୍ୱବିଖ୍ୟାତ ଦାର୍ଶନିକ ଓ ପଣ୍ଡିତ ଜେରେମି ବେନ୍ଥାମ (Jeremy Benthum) ଲଣ୍ଡନର ବାସିନ୍ଦା ଥିଲେ । ବେନ୍ଥାମ ସାହେବ ଅଧିକାଂଶ ସମୟ ଚିନ୍ତା ଓ ଗବେଷଣାରେ ମଗ୍ନ ରହୁଥିବା ଯୋଗୁଁ ପ୍ରାୟ କୌଣସି ବ୍ୟକ୍ତି ସହିତ ସାକ୍ଷାତ କରୁ ନ ଥିଲେ ଏବଂ କ୍ୱଚିତ୍ ନିଜ ନିବାସ ଛାଡ଼ି ଅନ୍ୟତ୍ର ଯାଉଥିଲେ । ରାମମୋହନ ରାୟ ଲଣ୍ଡନରେ ପହଞ୍ଚି ଆଡ଼େଲଫି ହୋଟେଲରେ ଅବସ୍ଥାନ କରୁଛନ୍ତି ଜାଣି, ତାଙ୍କୁ ସାକ୍ଷାତ୍ କରିବା ଲାଗି ଅତ୍ୟନ୍ତ ବ୍ୟଗ୍ର ହୋଇ ଜ୍ଞାନବୃଦ୍ଧ ଦାର୍ଶନିକ ସେଇ ଗଭୀର ରାତିରେ ଆଡ଼େଲଫି ହୋଟେଲରେ ଉପସ୍ଥିତ ହେଲେ । ମାତ୍ର ଯାତ୍ରାକ୍ଳାନ୍ତ ରାମମୋହନ ନିଦ୍ରିତ ଅଛନ୍ତି ଶୁଣି ଖଣ୍ଡେ କାଗଜରେ ଲେଖି ଦେଇଗଲେ— "Jeremy Benthum came to see his esteemed friend Rammohan Roy" (ଜେରେମି ବେନ୍ଥାମ ତାଙ୍କ ଶ୍ରଦ୍ଧେୟ ବନ୍ଧୁ ରାମମୋହନ ରାୟଙ୍କୁ ଭେଟିବା ସକାଶେ ଆସିଥିଲେ) । ପରଦିନ ରାମମୋହନ ବେନ୍ଥାମଙ୍କ ଘରକୁ ଯାଇ ତାଙ୍କ ସହିତ ସାକ୍ଷାତ ଓ ଶାସ୍ତ୍ର-ଚର୍ଚ୍ଚା କରିଥିଲେ ।

ହୋଟେଲର ବାତାବରଣ ଭଲ ନ ଲାଗିବାରୁ ରାମମୋହନ

୧୮୩୧-ରେଜେଣ୍ଟ ଷ୍ଟ୍ରିଟରେ ଥିବା ଗୋଟିଏ ହୋଟେଲ ଘରକୁ ଉଠିଗଲେ । ଏଇ ଘରେ ସେ ପ୍ରାୟ ଏକ ବର୍ଷ ପର୍ଯ୍ୟନ୍ତ ରହିଥିଲେ । ଏହି ସମୟରେ ରାମମୋହନଙ୍କ କାର୍ଯ୍ୟକଳାପ ବିଷୟରେ ତତ୍କାଳୀନ ଇଂଲଣ୍ଡର ଜଣେ ବିଶିଷ୍ଟ ନାଗରିକ ଓ ଶିକ୍ଷାବିତ୍ ଜେମସ୍ ସଦରଲ୍ୟାଣ୍ଡ ଲେଖିଛନ୍ତି—"ଭାରତର ଏଇ ଶ୍ରେଷ୍ଠ ବ୍ରାହ୍ମଣ ଦାର୍ଶନିକ ଲଣ୍ଡନରେ ପହଞ୍ଚିଛନ୍ତି ବୋଲି ଶୁଣିବା ମାତ୍ରେ, ଲଣ୍ଡନବାସୀ ବିଶିଷ୍ଟ ବ୍ୟକ୍ତିଗଣ ତାଙ୍କ ପ୍ରତି ଶ୍ରଦ୍ଧା ପ୍ରକାଶ ଲାଗି ସେ ରହୁଥିବା ଘରେ ଦଳଦଳ ହୋଇ ପହଞ୍ଚିବାକୁ ଲାଗିଲେ । ଏହି କାରଣରୁ ପ୍ରତ୍ୟହ ଦିନ ଏଗାରଟାଠାରୁ ଅପରାହ୍ଣ ପର୍ଯ୍ୟନ୍ତ ରାମମୋହନଙ୍କ ବାସଭବନ ସମ୍ମୁଖରେ ନାନାପ୍ରକାର ଯାନବାହନ ଧାଡ଼ି ବାନ୍ଧି ରହିବାର ଦେଖାଯାଉଥିଲା । ରାମମୋହନ ସେଥି ଦର୍ଶନେଚ୍ଛୁ ବ୍ୟକ୍ତିମାନଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଇ, ସେମାନେ ଜାଣିବାକୁ ଚାହୁଁଥିବା ବିଷୟଗୁଡ଼ିକ ପ୍ରାଞ୍ଜଳ ଭାବେ ବୁଝାଇ ଦେଉଥିଲେ । ପାର୍ଲାମେଣ୍ଟର ବହୁ ସଦସ୍ୟ ରାମମୋହନଙ୍କୁ ସାକ୍ଷାତ କରିବା ଲାଗି ଆସୁଥିଲେ ଏବଂ ସେହି ସମୟରେ ପାର୍ଲାମେଣ୍ଟରେ ଶାସନ-ସଂସ୍କାର ବିଲ୍ ଆଲୋଚିତ ହେଉଥିବା ଯୋଗୁଁ ରାମମୋହନ ସେମାନଙ୍କ ସଙ୍ଗେ ବିଭିନ୍ନ ରାଜନୈତିକ ସମସ୍ୟା ନେଇ ଆଲୋଚନା କରୁଥିଲେ । ଏହି ଆଲୋଚନା ସମୟରେ ନିଜ ଦେଶ ପ୍ରତି ହେଉଥିବା ରାଜନୈତିକ ଓ ଶାସନଗତ ଅବିଚାର ବିଷୟ ବର୍ଣ୍ଣନା କରୁ କରୁ ଅତ୍ୟଧିକ ଉତ୍ତେଜନା ଯୋଗୁଁ ରାମମୋହନ ସମୟ ସମୟରେ ଅଶ୍ରୁରୁଦ୍ଧ ହୋଇପଡୁଥିଲେ ।"

ଇଂଲଣ୍ଡର ରାଜା ଚତୁର୍ଥ ୱିଲିୟମଙ୍କ ମଧ୍ୟମଭ୍ରାତା ଡିଉକ୍ ଅଫ୍ କମ୍ବରଲ୍ୟାଣ୍ଡ ରାମମୋହନଙ୍କୁ ଲର୍ଡସଭାର ସଦସ୍ୟମାନଙ୍କ ସହିତ ପରିଚିତ କରାଇଦେଇଥିଲେ । ଏମାନେ ବିଶେଷ ଆଗ୍ରହ ସହିତ

ରାମମୋହନଙ୍କଠାରୁ ଭାରତବାସୀଙ୍କ ଅଭାବ ଅଭିଯୋଗ ବିଷୟ ଶୁଣୁଥିଲେ । ଇଂଲଣ୍ଡର ତତ୍କାଳୀନ ଶିକ୍ଷା-ସଚିବ ଲର୍ଡ଼ ବ୍ରୂକ୍‌ଲ୍ୟାଣ୍ଡଙ୍କ ସଙ୍ଗେ ରାମମୋହନଙ୍କର ଘନିଷ୍ଠ ବନ୍ଧୁତା ଗଢ଼ିଉଠିଥିଲା । ଲର୍ଡ଼ ବ୍ରୂକ୍‌ଲ୍ୟାଣ୍ଡ ଆପେ ଜଣେ ଉଚ୍ଚକୋଟୀର ଶିକ୍ଷାବିତ୍ ଥିଲେ ଏବଂ ରାମମୋହନଙ୍କ ପ୍ରଭାବ ଓ ପ୍ରରୋଚନାରେ ଭାରତୀୟ ଜନସାଧାରଣଙ୍କ ମଧ୍ୟରେ ଆଧୁନିକ ତଥା ବୈଜ୍ଞାନିକ ଶିକ୍ଷାର ବିସ୍ତାର ଲାଗି ଆବଶ୍ୟକୀୟ ଉଦ୍ୟୋଗ ଓ ଅର୍ଥବ୍ୟୟର ନିର୍ଭର ପ୍ରତିଶ୍ରୁତି ସେ ଦେଇଥିଲେ ।

## ନାଗରିକ ସମ୍ବର୍ଦ୍ଧନା ଓ ସ୍ୱାତନ୍ତ୍ର୍ୟରକ୍ଷା

ରାମମୋହନ ଇଂଲଣ୍ଡରେ ପହଞ୍ଚିବା ପୂର୍ବରୁହିଁ ତାଙ୍କର କାର୍ଯ୍ୟକଳାପ ଓ ବିଭିନ୍ନ ରଚନା ମାଧ୍ୟମରେ ସେ ଇଂଲଣ୍ଡବାସୀଙ୍କର ପରିଚିତ ହୋଇସାରିଥିଲେ । ମାତ୍ର ତାଙ୍କ ସହିତ ପ୍ରତ୍ୟକ୍ଷ ଆଲୋଚନା କରି ତାଙ୍କର ପ୍ରଗାଢ଼ ଜ୍ଞାନ ଓ ବଳିଷ୍ଠ ବ୍ୟକ୍ତିତ୍ୱରେ ମୁଗ୍ଧ ହୋଇ ଲଣ୍ଡନବାସୀ ତାଙ୍କୁ ଏକାଧିକ ନାଗରିକ ସମ୍ବର୍ଦ୍ଧନାରେ ଅଭିନନ୍ଦିତ କରିଥିଲେ । ବ୍ରିଟିଶ ଇଉନିଟେରିଆନ ସୋସାଇଟି ପକ୍ଷରୁ ଆୟୋଜିତ ଏକ ସମ୍ବର୍ଦ୍ଧନା ସଭାରେ ବେନ୍ଥାମଙ୍କ ଜୀବନୀକାର ସୁଲେଖକ ଡକ୍ଟର ବାଉରିଂ ସ୍ୱାଗତଭାଷଣ ପ୍ରସଙ୍ଗରେ କହିଥିଲେ— "କିଭଳି ଅଭିଭୂତ ଭାବରେ ଆମେ ଆଜ ରାଜା ରାମମୋହନ ରାୟଙ୍କୁ ଅଭ୍ୟର୍ଥନା ଜଣାଉଛୁ, ତାହା ବାକ୍ୟରେ ବର୍ଣ୍ଣନା କରି ହେବ ନାହିଁ । କେବଳ ଏତିକ କହିପାରିବି ଯେ, ହଠାତ୍ ପ୍ଲାଟୋ, ସକ୍ରେଟିସ, ନିଉଟନ ବା ମିଲ୍‌ଟନ ଆମ ଆଖି ଆଗରେ ଉଭା

ହୋଇଥିଲେ ମନ ଭିତରେ ଯେଉଁ ଅବର୍ଣ୍ଣନୀୟ ଉଚ୍ଛ୍ୱାସ ଉପୁଜଥାଆନ୍ତା, ସେହି ଭାବ ଘେନ ଆଜ ଆମେ ପ୍ରାଚ୍ୟ ଭୂଖଣ୍ଡର ସେଇ ମହାତ୍ମା ମାନବପ୍ରେମୀ ପଣ୍ଡିତଙ୍କୁ ସ୍ୱାଗତ ସମ୍ବର୍ଦ୍ଧନା ଜଣାଉଛୁ ।"

ରାମମୋହନ ଇଂଲଣ୍ଡରେ ପହଞ୍ଚିବା ପରେ ପରେ ଇଂଲଣ୍ଡ-ରାଜା ଚତୁର୍ଥ ଉଇଲିଅମ୍‌ଙ୍କର ଅଭିଷେକ ଉତ୍ସବ ଅନୁଷ୍ଠିତ ହେଲା । ରାଜା ଉଇଲିଅମ୍ ମଧ୍ୟ ରାମମୋହନଙ୍କ ପାଣ୍ଡିତ୍ୟ ଓ ମହାନୁଭବତା ବିଷୟରେ ଅବଗତ ଥିଲେ । ତେଣୁ ସେ ଲଣ୍ଡନରେ ପହଞ୍ଚିବା ଫଳରେ ତାଙ୍କୁ ରାଜପ୍ରାସାଦକୁ ସାକ୍ଷାତ ଲାଗି ଆହ୍ୱାନ କଲେ । ରାମମୋହନଙ୍କ ବ୍ୟକ୍ତିତ୍ୱ ଓ ଦୃଢ଼ତାରେ ମୁଗ୍ଧ ହୋଇ ଇଂଲଣ୍ଡ-ଅଧିପତି ତାଙ୍କୁ ଦିଲ୍ଲୀ-ବାଦଶାହଙ୍କ ଦୂତ ରୂପେ ସ୍ୱୀକାର କଲେ ଏବଂ ଅଭିଷେକ ଉତ୍ସବରେ ଦେଶବିଦେଶର ବିଶିଷ୍ଟ ବ୍ୟକ୍ତିମାନଙ୍କ ଗହଣରେ ତାଙ୍କର ଉପବେଶନ-ସ୍ଥାନ ନିର୍ଦ୍ଦିଷ୍ଟ କଲେ ।

ରାଜା ଉଇଲିଅମ୍‌ଙ୍କ ଏପରି ମନୋଭାବ ଦେଖି, ରାମମୋହନଙ୍କ ବିଲାତଯାତ୍ରାକୁ ବିରୋଧ କରୁଥିବା ଇଷ୍ଟ ଇଣ୍ଡିଆ କମ୍ପାନୀର ଲଣ୍ଡନସ୍ଥ ଡିରେକ୍ଟରଗଣ ମଧ୍ୟ ୧୮୩୧ ଖ୍ରୀଷ୍ଟାବ୍ଦର ଜୁଲାଇ ୬ ତାରିଖ ଦିନ ତାଙ୍କୁ ଏକ ଭୋଜସଭାରେ ସମ୍ବର୍ଦ୍ଧନା ଜଣାଇଲେ । ସେ ସମୟରେ ପ୍ରକାଶ ପାଉଥିବା ସମ୍ବାଦପତ୍ରଗୁଡ଼ିକରୁ ଜଣାଯାଏ ଯେ ଏହି ଭୋଜସଭାରେ ପ୍ରାୟ ଆଠଶହ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ । ଏହି ଉତ୍ସବରେ ପୌରୋହିତ୍ୟ କରି ଇଷ୍ଟ ଇଣ୍ଡିଆ କମ୍ପାନୀର ସଭାପତି ମହୋଦୟ ନିଜ ଭାଷଣରେ କହିଥିଲେ— "ଭାରତବାସୀଙ୍କ ସର୍ବାଙ୍ଗୀଣ ଉନ୍ନତି ଲାଗି ରାମମୋହନ ସବୁପ୍ରକାର ଉଦ୍ୟମ ଅକ୍ଳାନ୍ତ ଭାବରେ କରିଛନ୍ତି । ବହୁ ଦେଶ ଭ୍ରମଣ ଓ ପ୍ରଗାଢ଼

ଅଧ୍ୟୟନ ଦ୍ୱାରା ଏହି ବ୍ରାହ୍ମଣ ଅସାଧାରଣ ଜ୍ଞାନ ଓ ପାଣ୍ଡିତ୍ୟର ଅଧିକାରୀ ହୋଇପାରିଛନ୍ତି ।" ପ୍ରତ୍ୟୁତ୍ତର ଛଳରେ ରାମମୋହନ ରାୟ କହିଥିଲେ—"ଇଷ୍ଟ ଇଣ୍ଡିଆ କମ୍ପାନୀର ଶାସନଫଳରେ ଭାରତୀୟମାନଙ୍କର ଧନ ଓ ପ୍ରାଣ ନିରାପଦ ହୋଇଛି । ଲର୍ଡ଼ ଉଇଲିଅମ୍ ବେଣ୍ଟିକ୍ ଜଣେ ଆଦର୍ଶ ଶାସକ । ସେ କଦାପି ଆଡ଼ମ୍ବର ବା ସ୍ୱେଚ୍ଛାଚାରର ପ୍ରଦର୍ଶନ କରିନାହାନ୍ତି—ଉପରନ୍ତୁ ଭାରତୀୟମାନଙ୍କ ମଙ୍ଗଳବିଧାନ ଲାଗି ସେ ଯଥାସାଧ୍ୟ ଚେଷ୍ଟା କରିଛନ୍ତି । ଏହିପରି ଆଦର୍ଶ ଶାସକ ନିଯୁକ୍ତ କରି, ଭାରତୀୟମାନଙ୍କର ସର୍ବାଙ୍ଗୀଣ ଉନ୍ନତି ସାଧନ କରି ସେମାନଙ୍କୁ ସ୍ୱାବଲମ୍ବୀ କରିପାରିଲେହିଁ ଇଷ୍ଟ ଇଣ୍ଡିଆ କମ୍ପାନୀ ଏବଂ ତା ଜରିଆରେ ଇଂଲଣ୍ଡ ଅଧୀଶ୍ୱରଙ୍କ ମହତ୍ତ୍ୱ ପ୍ରତିଷ୍ଠିତ ହୋଇପାରିବ ।" ଏଠାରେ ବିଶେଷ ଉଲ୍ଲେଖଯୋଗ୍ୟ ବିଷୟ ଯେ, ଏହି ଭୋଜିସଭାକୁ ଆମନ୍ତ୍ରିତ ସମସ୍ତ ବ୍ୟକ୍ତି ମୃଗ, ମେଷ ଓ ଗୋ-ମାଂସ ଭୋଜନ କରି ଏବଂ ମୂଲ୍ୟବାନ୍ ମଦ୍ୟ ପାନକରି ଆନନ୍ଦ ଉପଭୋଗ କରୁଥିବା ସମୟରେ ଭାରତୀୟ ବ୍ରାହ୍ମଣସାଧକ ରାମମୋହନ ନିଜ ପାଚକ-ପ୍ରସ୍ତୁତ ଅନ୍ନ-ବ୍ୟଞ୍ଜନରେ ଏବଂ ଶୀତଳ ଜଳରେ କ୍ଷୁଧାତୃଷା ନିବାରଣ କରୁଥିଲେ ।

ପୂର୍ବରୁ କୁହାଯାଇଛି ଯେ, ଇଂରେଜ ସରକାର ରାମମୋହନଙ୍କୁ ଦିଲ୍ଲୀ-ସମ୍ରାଟ୍‌ଙ୍କ ଦୂତ ରୂପେ ଗ୍ରହଣ କରି ଦିଲ୍ଲୀଶ୍ୱର ପ୍ରଦତ୍ତ 'ରାଜା' ଉପାଧିକୁ ସ୍ୱୀକାର କରିଥିଲେ । ଏଥିକରେ ସନ୍ତୁଷ୍ଟ ନହିଁ ରାମମୋହନ ନିଜର ଅପ୍ରତିହତ ପ୍ରୟାସଦ୍ୱାରା ଦିଲ୍ଲୀ ସମ୍ରାଟ୍‌ଙ୍କ ବାର୍ଷିକ ବୃତ୍ତି ବାର ଲକ୍ଷ ଟଙ୍କାରୁ ପନ୍ଦର ଲକ୍ଷ ଟଙ୍କାକୁ ବୃଦ୍ଧିକରାଇଥିଲେ ।

## ଶାସନ-ସଂସ୍କାର ବିଲ୍

ରାମମୋହନ ଇଂଲଣ୍ଡରେ ଥିବା ସମୟରେ ଶାସନ-ସଂସ୍କାର ବା **Reform Bill** ବ୍ରିଟିଶ ପାର୍ଲାମେଣ୍ଟରେ ଆଲୋଚିତ ହେଉଥିଲା । ଏହି ବିଲ୍ ଆଲୋଚନା ସମୟରେ ଇଂଲଣ୍ଡର ଜନସାଧାରଣଙ୍କ ମଧ୍ୟରେ ଏପରି ଉତ୍ତେଜନା ପ୍ରକାଶ ପାଉଥିଲା ଯେ ପୂର୍ବାପର ଘଟଣା ସଙ୍ଗେ ସଂପୃକ୍ତ ନଥିବା ଯେକୌଣସି ବ୍ୟକ୍ତି ସ୍ୱଚ୍ଛନ୍ଦରେ ଭାବିପାରନ୍ତା ଯେ ଇଂଲଣ୍ଡରେ ରାଷ୍ଟ୍ର-ବିପ୍ଳବ ଘଟିଛି । ସ୍ୱାଧୀନତାର ପୂଜକ ରାମମୋହନ ଏହି ଆନ୍ଦୋଳନକୁ ବ୍ୟଗ୍ର ଭାବରେ ଲକ୍ଷ୍ୟ କରୁଥିଲେ । ସେହି ସମୟରେ ଜଣେ ଭାରତୀୟ ବନ୍ଧୁଙ୍କୁ ପଠାଇଥିବା ଗୋଟିଏ ପତ୍ରରେ ସେ ଲେଖିଥିଲେ—"ଏହି ସଂଗ୍ରାମ କେବଳ ଇଂଲଣ୍ଡୀୟ ସଂସ୍କାର ସମର୍ଥନକାରୀ ଓ ବିରୋଧୀ ବ୍ୟକ୍ତିମାନଙ୍କ ମଧ୍ୟରେ ବୋଲି କହିଲେ ଉଚିତ ହେବ ନାହିଁ ଏହା ପ୍ରକୃତରେ ସ୍ୱାଧୀନତା ସହିତ ସ୍ୱେଚ୍ଛାଚାରର ସଂଗ୍ରାମ ଏବଂ ଏହାର ପରିସର ପୃଥିବୀବ୍ୟାପୀ । ଏହା ନ୍ୟାୟ ସହିତ ଅନ୍ୟାୟର ଏବଂ ଧର୍ମ ସହିତ ଅଧର୍ମର ସଂଗ୍ରାମ ।" ଶାସନ ସଂସ୍କାର ବିଲ୍ ପାର୍ଲାମେଣ୍ଟରେ ଗୃହୀତ ହୋଇଯିବା ପରେ ଆନନ୍ଦରେ ଉଚ୍ଛ୍ୱସିତ ହୋଇ ରାମମୋହନ୍ ତାଙ୍କର ଜଣେ ଇଂରେଜ-ବନ୍ଧୁ ଉଇଲିଅମ ରାଥବୋନ୍ ସାହେବଙ୍କୁ ଗୋଟିଏ ଚିଠିରେ ଲେଖିଥିଲେ—"ମୁଁ ପୂର୍ବରୁ ଆପଣଙ୍କୁ କହିଥିଲି ଯେ ଶାସନ ସଂସ୍କାର ବିଲ୍ ଗୃହୀତ ନ ହେଲେ, ମୁଁ ଏଇ ଦେଶ ସହିତ ସମସ୍ତ ସମ୍ପର୍କ ଛିନ୍ନ କରିବି । ତେଣୁ ଏଇ ବିଲ୍‌ର ଫଳାଫଳ ନଜାଣିବା ପର୍ଯ୍ୟନ୍ତ ମୁଁ ଆପଣଙ୍କୁ ବା ଅନ୍ୟ କୌଣସି ଏ ଦେଶୀୟ ବନ୍ଧୁଙ୍କୁ ଗୋଟିଏ ହେଲେ ପତ୍ର ଲେଖିନଥିଲି । ଏବେ ଏଇ ବିଲ୍ ଗୃହୀତ ହୋଇଯାଇଥିବା ଯୋଗୁଁ

ସାଧାରଣ ମଣିଷର ସଫଳ ସଂଗ୍ରାମ ଲାଗି ଏବଂ ସେଇ ସଙ୍ଗେ ମୁଁ ଆପଣମାନଙ୍କର ବନ୍ଧୁ ହୋଇ ରହିପାରିବା ଯୋଗୁଁ ପରମେଶ୍ୱରଙ୍କୁ ଅଜସ୍ର ଧନ୍ୟବାଦ ଜଣାଉଛି । ଏହି ଆନ୍ଦୋଳନର ସଫଳତା କେବଳ ଗୋଟିଏ ଜାତିର ନୁହେଁ, ସାରା ପୃଥିବୀର ମଣିଷଜାତିର ମୁକ୍ତିର ପ୍ରତୀକ ରୂପେ ପ୍ରତ୍ୟକ୍ଷ କରି ସର୍ବାନ୍ତଃକରଣରେ ଆନନ୍ଦ ଅନୁଭବ କରୁଛି ।" ଉପରୋକ୍ତ ଉଦ୍ଧୃତାଂଶରୁ ରାମମୋହନଙ୍କ ବିଶ୍ୱ-ମାନବିକତାର ପରିଚୟ ସୁସ୍ପଷ୍ଟ ଭାବରେ ମିଳେ ।

## ସତୀଦାହ ଆଇନବିରୋଧୀ ଅପିଲ

ଲର୍ଡ଼ ବେଣ୍ଟିକ୍ ସତୀଦାହ ନିବାରଣ ଆଇନ ପ୍ରଣୟନ କରିବା ପରେ ରକ୍ଷଣଶୀଳ ହିନ୍ଦୁ ସଂପ୍ରଦାୟର 'ଧର୍ମସଭା' ପକ୍ଷରୁ ତାହାକୁ ବାତିଲ୍ କରିବା ଲାଗି ପ୍ରିଭି କାଉନ୍‌ସିଲରେ ଏକ ଅପିଲ ପେସ୍ କରାଯାଇଥିଲା । ରାମମୋହନ ମଧ୍ୟ ଏଇ ଅପିଲକୁ ଅଗ୍ରାହ୍ୟ କରିବା ଲାଗି ଆଉ ଗୋଟିଏ ଅପିଲ ସୁପ୍ରୀମ୍ କୋର୍ଟରେ ପେସ୍ କରିଥିଲେ । ରାମମୋହନ ଲଣ୍ଡନରେ ଥିବା ସମୟରେ ସୁପ୍ରୀମ କୋର୍ଟରେ ଏଇ ଅପିଲ ଶୁଣାଣି ଆରମ୍ଭ ହୋଇଥିଲା । ଏଇ ଶୁଣାଣି ସମୟରେ ରାମମୋହନ ସ୍ୱୟଂ ସୁପ୍ରୀମ କୋର୍ଟରେ ପ୍ରତିବାଦୀ ରୂପେ ଉପସ୍ଥିତ ଥାଇ ରକ୍ଷଣଶୀଳମାନଙ୍କ ଅପିଲ ବିରୁଦ୍ଧରେ ନିଜର ମତାମତ ପେସ୍ କରିଥିଲେ । ୧୮୩୨ ଖ୍ରୀଷ୍ଟାବ୍ଦର ଜୁଲାଇ ୧୧ ତାରିଖ ଦିନ ପ୍ରିଭି କାଉନ୍‌ସିଲ ଏଇ ମକଦ୍ଦମାକୁ ଖାରଜ କରି ନିକଟରେ ଜାରିହୋଇଥିବା ସତୀଦାହ-ନିବାରଣ ଆଇନକୁ କାଏମ ରଖିଥିଲେ ।

# ଫ୍ରାନ୍ସ ପରିଦର୍ଶନ

ରାମମୋହନଙ୍କ ଇଂଲଣ୍ଡ ଆଗମନର ବହୁ ପୂର୍ବରୁ ଫରାସୀମାନେ ତାଙ୍କର ପାଣ୍ଡିତ୍ୟ ଓ ମହାମାନବିକତା ବିଷୟରେ ଅବହିତ ହୋଇଥିଲେ । ରାମମୋହନଙ୍କ ପ୍ରଭାବ ଫରାସୀ ଜାତି ଉପରେ ଏତେଦୂର ପଡ଼ିଥିଲା ଯେ ଜଣେ ଫରାସୀ ଧର୍ମଯାଜକ ରାମମୋହନଙ୍କ ଗୁଣାବଳୀର ଅଶେଷ ପ୍ରଶଂସା କରି ଗୋଟିଏ ପୁସ୍ତକ ରଚନା କରିଥିଲେ । ୧୮୩୨ ଖ୍ରୀଷ୍ଟାବ୍ଦରେ ରାମମୋହନ ଲଣ୍ଡନରେ ଥିବା ସମୟରେ ଫରାସୀ ସମ୍ରାଟ୍ ଲୁଇ ଫିଲିପ ତାଙ୍କୁ ଫ୍ରାନ୍ସ ପରିଦର୍ଶନ ଲାଗି ନିମନ୍ତ୍ରଣ ଜଣାଇଥିଲେ । ଏହି ନିମନ୍ତ୍ରଣ ଗ୍ରହଣକରି ରାମମୋହନ ସେହି ବର୍ଷ ଅକ୍ଟୋବର ମାସରେ ପ୍ୟାରିସକୁ ଯାଇଥିଲେ । ଏଠାରେ ଉଲ୍ଲେଖଯୋଗ୍ୟ ବିଷୟ ଯେ, ରାମମୋହନ ଫରାସୀ ଭାଷା ଜାଣି ନଥିଲେ । ମାତ୍ର ଫ୍ରାନ୍ସକୁ ଯିବା ଲାଗି ନିମନ୍ତ୍ରିତ ହେବା ପରେ, ଫରାସୀ ଲୋକମାନଙ୍କ ସହିତ ମନ ଖୋଲି ଆଲୋଚନା କରିବା ଉଦ୍ଦେଶ୍ୟରେ, ଅସାଧାରଣ ଅଧ୍ୟବସାୟ ଦ୍ୱାରା ରାମମୋହନ ମାତ୍ର ତିନିମାସ ମଧ୍ୟରେ ଫରାସୀ ଭାଷାରେ କାମଚଳା ଜ୍ଞାନ ଅର୍ଜନ କରିପାରିଲେ । ପ୍ୟାରିସଠାରେ ରାଜ-ସରକାର ତଥା ଜନସାଧାରଣଙ୍କ ପକ୍ଷରୁ ତାଙ୍କୁ ବିପୁଳ ସମ୍ବର୍ଦ୍ଧନା ଦିଆଯାଇଥିଲା ।

ଏପରିକି ସେ ପ୍ୟାରିସରେ ଥିବା ଏସିଆଟିକ୍ ସୋସାଇଟିର ସମ୍ମାନିତ ସଦସ୍ୟ ରୂପେ ମଧ୍ୟ ନିର୍ବାଚିତ ହୋଇଥିଲେ । ବିଖ୍ୟାତ ଇଂରେଜ କବି ଟମାସ ମୁର୍ ସେହି ସମୟରେ ସାମୟିକ ଭାବରେ ଫ୍ରାନ୍ସରେ ବସବାସ କରୁଥିଲେ । ରାମମୋହନ ଫ୍ରାନ୍ସକୁ ଆସିଛନ୍ତି ଜାଣି, ଟମାସ ମୁର୍ ତାଙ୍କ ସହିତ ସାକ୍ଷାତ କରି ତାଙ୍କୁ

ଏକ ଭୋଜସଭାରେ ଆପ୍ୟାୟିତ କରିଥିଲେ । ସମ୍ରାଟ୍ ଲୁଇ ଫିଲିପ ମଧ୍ୟ ରାମମୋହନଙ୍କ ସମ୍ବର୍ଦ୍ଧନା ନିମନ୍ତେ ଏକ ଶୃଙ୍ଖଳାପୂର୍ଣ୍ଣ ରାଜକୀୟ ଭୋଜର ଆୟୋଜନ କରିଥିଲେ । ଏହି ଉତ୍ସବରେ ଫ୍ରାନ୍ସର ଅଧିକାଂଶ ସମ୍ଭ୍ରାନ୍ତ ଏବଂ ବିଶିଷ୍ଟ ବ୍ୟକ୍ତି ଉପସ୍ଥିତ ଥିଲେ । ରାମମୋହନଙ୍କ ଆସନ ସମ୍ରାଟ୍‌ଙ୍କ ପାର୍ଶ୍ୱରେ ନିର୍ଦ୍ଦିଷ୍ଟ ହୋଇଥିଲା । ଏହି ଭୋଜିରେ ନାନା ପ୍ରକାର ସୁସ୍ୱାଦୁ ଖାଦ୍ୟ ପରିବେଷିତ ହୋଇଥିଲା । ମାତ୍ର ରାମମୋହନ ଦୁଧ ଓ ଫଳ ବ୍ୟତୀତ ଅନ୍ୟ କିଛି ସ୍ପର୍ଶ କରିନଥିଲେ ।

## ବ୍ରିଷ୍ଟଲ ଗମନ ଓ ଦେହାନ୍ତ

ଲଣ୍ଡନର ଜଳବାୟୁ ରାମମୋହନଙ୍କ ସ୍ୱାସ୍ଥ୍ୟ ପକ୍ଷରେ ଅନୁକୂଳ ନଥିଲା । ପୁଣି ଅତିରିକ୍ତ ମାନସିକ ପରିଶ୍ରମ ଫଳରେ ୧୮୩୩ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରେ ରାମମୋହନ ଅସୁସ୍ଥ ହୋଇ-ପଡ଼ିଲେ । ଲଣ୍ଡନର ବିଶିଷ୍ଟ ଚିକିତ୍ସକମାନେ ବାୟୁ ପରିବର୍ତ୍ତନ ଲାଗି ପରାମର୍ଶ ଦେବାରୁ ରାମମୋହନଙ୍କୁ ବ୍ରିଷ୍ଟଲ ସହରକୁ ସ୍ଥାନାନ୍ତରିତ କରାଗଲା । ବ୍ରିଷ୍ଟଲରେ ପହଞ୍ଚି ରାମମୋହନ ତାଙ୍କର ଘନିଷ୍ଠ ସହଯୋଗୀ ଡେଭିଡ୍ ହେୟାରଙ୍କ ଜଣେ ଆତ୍ମୀୟା କୁମାରୀ କ୍ୟାନସଲଙ୍କ ଘରେ ଅବସ୍ଥାନ କଲେ । ଏହି ଘରଟି 'ଷ୍ଟେପଲଟନ୍ ଗ୍ରୋଭ୍' ନାମକ ଗୋଟିଏ ଉଦ୍ୟାନ ମଧ୍ୟରେ ଅବସ୍ଥିତ ଥିଲା । ରାମମୋହନ ବ୍ରିଷ୍ଟଲ୍‌ରେ ପହଞ୍ଚିଛନ୍ତି ଶୁଣିବାମାତ୍ରେ ଡକ୍ଟର କାର୍ପେଣ୍ଟର, ରେଭରେଣ୍ଡ ଜନ ଫଷ୍ଟର ପ୍ରମୁଖ ସ୍ଥାନୀୟ ବିଶିଷ୍ଟ ବାସିନ୍ଦାଗଣ ତାଙ୍କୁ ଦେଖିବାକୁ ଓ ତାଙ୍କ ସହିତ ଆଲୋଚନା

କରିବା ଉଦ୍ଦେଶ୍ୟରେ ଷ୍ଟେପଲଟନ୍ ଗ୍ରୋଭରେ ସମବେତ ହେଲେ । ଅସାଧାରଣ ମନୋବଳ ଏବଂ ଜ୍ଞାନଚର୍ଚ୍ଚା ଲାଗି ଅପରିସୀମ ଆଗ୍ରହ ଥିବା ଯୋଗୁଁ ରାମମୋହନ ସେଭଳି ଅସୁସ୍ଥ ଅବସ୍ଥାରେ ମଧ୍ୟ ପ୍ରାୟ ତିନିଘଣ୍ଟା ପର୍ଯ୍ୟନ୍ତ ଦଣ୍ଡାୟମାନ ହୋଇ ସମବେତ ବ୍ରିଷ୍ଟଲବାସୀ-ମାନଙ୍କୁ ଭାରତୀୟ ଆଧ୍ୟାତ୍ମିକତା ଓ ସଂସ୍କୃତି ବିଷୟ ପ୍ରାଞ୍ଜଳ ଭାବରେ ବୁଝାଇଥିଲେ ।

୧୮୩୩, ସେପ୍ଟେମ୍ବର ୧୮ଠାରୁ ରାମମୋହନ ଗୁରୁତର ଅସୁସ୍ଥ ହୋଇପଡ଼ିଲେ । ସେପ୍ଟେମ୍ବର ୨୨ ଠାରୁ ଲଣ୍ଡନର ବିଖ୍ୟାତ ଚିକିତ୍ସକ ଡକ୍ଟର ପ୍ରିଚାର୍ଡ଼ ତାଙ୍କର ଚିକିତ୍ସା ଆରମ୍ଭ କଲେ । ମାତ୍ର ରୋଗ ଉପଶମ ହେବା ପରିବର୍ତ୍ତେ କ୍ରମେ ଜଟିଳ ଆକାର ଧାରିଲା । ୨୭ ସେପ୍ଟେମ୍ବରଠାରୁ ସେ ସଂଜ୍ଞାହୀନ ଅବସ୍ଥାରେ ରହି ୧୮୩୩, ସେପ୍ଟେମ୍ବର ୨୭ ରାତି ୨ଟା ୨୫ ମିନିଟ୍ ସମୟରେ ମର ଶରୀର ତ୍ୟାଗ କରି ପରଲୋକ ପ୍ରୟାଣ କଲେ । ରାମମୋହନଙ୍କ ଏକାନ୍ତ ଅନୁଗାମୀ ଓ ଯଥାର୍ଥ ସହକର୍ମୀ ଡେଭିଡ୍ ହେୟାରଙ୍କ ଐକାନ୍ତିକ ଆଗ୍ରହ ଯୋଗୁଁ ରାମମୋହନଙ୍କର ମରଦେହ ସେହି ଷ୍ଟେପଲଟନ୍ ଗ୍ରୋଭର ମଧ୍ୟଭାଗରେ ସମାଧିସ୍ଥ କରାଯାଇ ତା ଉପରେ ଏକ ସ୍ମୃତିସୌଧ ନିର୍ମାଣ କରାଯାଇଥିଲା । ୧୮୪୨ ଖ୍ରୀଷ୍ଟାବ୍ଦରେ ରାମମୋହନଙ୍କର ପ୍ରଧାନ ଭାରତୀୟ ସମର୍ଥକ ଓ ସହଯୋଗୀ ଦ୍ୱାରକାନାଥ ଠାକୁର (ବିଶ୍ୱକବି ରବୀନ୍ଦ୍ରନାଥ ଠାକୁରଙ୍କ ପିତାମହ) ବ୍ରିଷ୍ଟଲ ଯାଇ ଆର୍ନୋସଭେଲ୍ ନାମକ ଉଦ୍ୟାନରେ କିଛି ଜମି କ୍ରୟ କରି, ଷ୍ଟେପଲଟନ୍ ଗ୍ରୋଭରୁ ରାମମୋହନଙ୍କ ଅସ୍ଥି ଅଣାଇ ସେହିଠାରେ ସମାଧିସ୍ଥ କରି, ତା ଉପରେ ଭାରତୀୟ ଦେବମନ୍ଦିର ଧରଣରେ ଗୋଟିଏ ସ୍ମୃତିସୌଧ ନିର୍ମାଣ କଲେ ।

ସେହି ସୌଧଟି ଆଜ ଯାଏ ଅକ୍ଷତ ରହିଛି ଏବଂ ଇଂଲଣ୍ଡରେ ଥିବା ଭାରତୀୟମାନଙ୍କ ମଧ୍ୟରେ ଏହା ଏକ ତୀର୍ଥକ୍ଷେତ୍ର ପରି କହିଲେ ଅତ୍ୟୁକ୍ତି ହେବ ନାହିଁ ।

## ରାମମୋହନଙ୍କ ସମ୍ବନ୍ଧରେ କେତେକ ଆଖ୍ୟାୟିକା

ଗଭୀର ଧର୍ମଭାବ ଯୋଗୁଁ ରାମମୋହନଙ୍କର ମନୋବଳ ଅତି ଦୃଢ଼ ଥିଲା । ବିଧାତା ଦେଉଥିବା ଦୁଃଖ ଓ ସୁଖକୁ ସମଭାବରେ, ଅବିଚଳିତ ମନରେ ଗ୍ରହଣ କରିବା ଲାଗି ସେ ସର୍ବଦା ସମସ୍ତଙ୍କୁ ପରାମର୍ଶ ଦେଉଥିଲେ । ଅତି ଦାରୁଣ ଆଘାତ ପାଇ ରାମମୋହନ ଆପେ ଅବିଚଳିତ ରହି ପାରିବେ କି ନାହିଁ, ତାହା ପରୀକ୍ଷା କରିବା ସକାଶେ ତାଙ୍କର ଦୁଇଜଣ ପ୍ରତିବେଶୀ ଏକ କୌଶଳ କଲେ । ସେ ସମୟରେ ରେଳ ବା ମଟର ନଥିବା ଯୋଗୁଁ ଡାକହରକରାମାନଙ୍କ ଦ୍ୱାରା ଏକ ସ୍ଥାନରୁ ଅନ୍ୟ ସ୍ଥାନକୁ ଚିଠି ପତ୍ର ପଠାଯାଉଥିଲା । ପ୍ରତିବେଶୀ ଦୁହେଁ, ରାମମୋହନଙ୍କ ପୈତୃକ ଗ୍ରାମ ରାଧାନଗରର ଶିରୋନାମା ଦେଇ ଗୋଟିଏ ଜାଲ୍ ଚିଠି ଲେଖି ଜଣାଇଲେ ଯେ ତାଙ୍କର ଜ୍ୟେଷ୍ଠପୁତ୍ର ରାଧାକାନ୍ତ ସାପକାମୁଡ଼ାରେ ପ୍ରାଣତ୍ୟାଗ କରିଛି । ତାପରେ ତାହାକୁ ପ୍ରକୃତ ଚିଠି ବୋଲି ପ୍ରତିପନ୍ନ କରାଇବା ଲାଗି ରାଧାନଗରରୁ ଡାକ ନେଇ ଆସୁଥିବା ଜଣେ ହରକରାକୁ କିଛି ଉତ୍କୋଚ ଦେଇ, ଉକ୍ତ ଚିଠି ଥିବା ଖୋଳଟି ସେ ନିଜେ ରାମମୋହନଙ୍କ ହାତକୁ ବଢ଼ାଇ ଦେବ ବୋଲି ବନ୍ଦୋବସ୍ତ କଲେ । ତାପରେ ଦୁଇ ପ୍ରତିବେଶୀ ରାମମୋହନଙ୍କ ଘରକୁ ଯାଇ

ଶାସ୍ତ୍ର-ଚର୍ଚ୍ଚା ଆରମ୍ଭ କଲେ । ରାତ୍ରିର ଶାସ୍ତ୍ରାଲୋଚନାରେ ରାମମୋହନ ନିମଗ୍ନ, ଏପରି ସମୟରେ ପୂର୍ବ ଶିକ୍ଷା ଅନୁସାରେ ଡାକହରକରା ତାଙ୍କ ନିକଟରେ ପହଞ୍ଚି ଖୋଲିଚିଠି ତାଙ୍କ ହାତକୁ ବଢ଼ାଇଦେଲା ରାମ ମୋହନ ଖୋଲିଚିଠି ତଳ ଚିଠିଟି ପଢ଼ିଲେ । ଚିଠିରେ ଥିବା ସମ୍ବାଦଟି ପଢ଼ି ତାଙ୍କର ମନୋଭାବରେ କି ପରିବର୍ତ୍ତନ ଘଟିବ ତାହା ଦେଖିବା ସକାଶେ ଶାସ୍ତ୍ର-ଆଲୋଚନାର ଛଳନା କରିଥିବା ପ୍ରତିବେଶୀ ଦୁହେଁ ବ୍ୟାକୁଳ ହୋଇ ରହିଁ ରହିଥାଆନ୍ତି । କିନ୍ତୁ ସେମାନଙ୍କୁ ନିତାନ୍ତ ନିରାଶ ହେବାକୁ ପଡ଼ିଲା । ମାତ୍ର କ୍ଷଣକ ସକାଶେ ରାମମୋହନଙ୍କ ମୁହଁ ଗମ୍ଭୀର ଦିଶିଲା । ଥରକ ଲାଗି ଆକାଶ ଆଡ଼େ ଅନାଇଁ, ସେ ପୁଣି ସ୍ୱାଭାବିକ ଭାବରେ ଶାସ୍ତ୍ର-ଚର୍ଚ୍ଚା ଆରମ୍ଭ କଲେ । ଏପରି ଅତୁଳନୀୟ ଧର୍ମ-ଭାବ ଦେଖି ଦୁଇ ପ୍ରତିବେଶୀ ତାଙ୍କ ପାଦତଳେ ପଡ଼ି କ୍ଷମା ମାଗି ପ୍ରକୃତ ଘଟଣା ଫିଟାଇ କହିଲେ । ଉଦାରହୃଦୟ ରାମମୋହନ ମଧ୍ୟ କୌଣସି ପ୍ରକାର କ୍ରୋଧ ପ୍ରକାଶ ନକରି ସ୍ନେହରେ ଦୁହିଁଙ୍କୁ ଆଲିଙ୍ଗନ କଲେ ଏବଂ ଅନ୍ୟ କାହା ପ୍ରତି ଏପରି ନକରିବାକୁ ପରାମର୍ଶ ଦେଲେ ।

× × × ×

ସେଇ ସୁଦୂର ସାମନ୍ତବାଦୀ ଯୁଗରେ, ବିତ୍ତଶାଳୀ ଅଭିଜାତ ବ୍ରାହ୍ମଣଘରେ ଜନ୍ମଗ୍ରହଣ କରି ଏବଂ ନିଜେ ଉଚ୍ଚ ରାଜପଦରେ ପ୍ରତିଷ୍ଠିତ ଥାଇ ସୁଦ୍ଧା ରାମମୋହନ ଶ୍ରମର ମର୍ଯ୍ୟାଦାରେ ଦୃଢ଼ ବିଶ୍ୱାସୀ ଥିଲେ । ପୁଣି ଆଧ୍ୟାତ୍ମିକ କ୍ଷେତ୍ରରେ ଜାତି-ଧର୍ମ-ବର୍ଣ୍ଣ-ନିର୍ବିଶେଷରେ ସେ ଯେଉଁ ସାମ୍ୟଦୃଷ୍ଟିର ପୃଷ୍ଠପୋଷକତା କରୁଥିଲେ, ଅର୍ଥନୈତିକ ଓ ସାମାଜିକ କ୍ଷେତ୍ରରେ ମଧ୍ୟ ସେହି ସମଭାବ ତାଙ୍କଠାରେ ପରିପୂର୍ଣ୍ଣ ଭାବରେ ଥିଲା । ତାଙ୍କ ଜୀବନର ଦୁଇଗୋଟି ଘଟଣାରୁ ଏହା ସ୍ପଷ୍ଟ ଜଣାପଡ଼ିବ ।

୧୮୨୨ ବା ୧୮୨୩ ଖ୍ରୀଷ୍ଟାବ୍ଦର କଥା । ସେ ସମୟରେ ଯାନବାହନ ଅତି କମ୍ ଥିଲା । ଧନବାନ୍ ଲୋକେ ବଜାରକୁ ଆସି ବେଶି ପରିମାଣ ଜିନିଷ କିଣିଲେ, ସେଗୁଡ଼ିକୁ ବଡ଼ ଝୁଡ଼ିରେ ପୂରାଇ ମୂଲିଆ ମୁଣ୍ଡରେ ଲଦାଇ ନିଜ ଘରକୁ ଆଣୁଥିଲେ । ଦିନେ ରାମମୋହନ ବଡ଼ବଜାର ଅଞ୍ଚଳରେ ଯାଉଥିବା ସମୟରେ ଦେଖିଲେ ଯେ ଅଭିଜାତ ପରିବାରର ଜଣେ ଯୁବକ ଗୋଟିଏ ବଡ଼ ଝୁଡ଼ିରେ ନାନା ପ୍ରକାରର ଜିନିଷ ରଖି, ସେଗୁଡ଼ିକ ତାଙ୍କ ଘରେ ପହଞ୍ଚାଇ-ଦେବା ସକାଶେ ଜଣେ ମୂଲିଆ ନିଯୁକ୍ତ କରିଛନ୍ତି । ମୂଲିଆଟିର ବାଂଧ୍ୟସ କିଛି ଅଧିକ ହୋଇଥିବା ଯୋଗୁଁ ଏତେ ଭାରି ବୋଝଟି ଭୂଇଁରୁ ଟେକି ନିଜ ମୁଣ୍ଡ ଉପରେ ରଖିବା ଲାଗି ତାର ବଳ ପାଉନଥାଏ । ଦୁଇ ତିନିଥର ବୃଥା ଚେଷ୍ଟା ପରେ, ଝୁଡ଼ିର ଗୋଟାଏ ପଟେ ହାତ ଲଗାଇ ସେଇଟି ତା ମୁଣ୍ଡ ଉପରକୁ ଟେକି ଦେବା ସକାଶେ ସେ ଯୁବକଜଣଙ୍କୁ ଅନୁରୋଧ କଲା । ତା କଥା ଶୁଣି ଯୁବକଟି ରାଗରେ ଚିତ୍କାର କରି କହିଲେ—"ମୁଁ କେଡ଼େ ଖାନ୍ଦାନ୍ ଘରର ପିଲା ! ତୁ କଣ ମତେ ତୋ ପରି କୁଲି ଭାବିଚୁ ଯେ ଝୁଡ଼ିରେ ହାତ ଲଗାଇବା ପାଇଁ କହୁଛୁ ? ତୋ ସାହସ ତ କମ୍ ନୁହେଁ ?" ଏ ଘଟଣା ରାମମୋହନଙ୍କୁ ଅସହ୍ୟ ବୋଧହେଲା । ସେ ନିକଟକୁ ଆସି, କାହାର ସାହାଯ୍ୟ ବିନା ବୋଝଟି ମୂଲିଆର ମୁଣ୍ଡଉପରେ ରଖି ଦେଇ, ଯୁବକକୁ ଭର୍ତ୍ସନା କରି କହିଲେ— "ଅନ୍ୟକୁ, ବିଶେଷରେ ଗରିବ ଓ ଦୁର୍ବଳ ଲୋକଙ୍କୁ ସାହାଯ୍ୟ କରିବା ମଣିଷର ପରମ କର୍ତ୍ତବ୍ୟ । ଆଜିର ଏଇ ଆଚରଣ ଦ୍ୱାରା ତୁମେ ପ୍ରକାଶ କଲ ଯେ ଏପର୍ଯ୍ୟନ୍ତ ତୁମେ ଧର୍ମପଥରୁ ବହୁତ ଦୂରରେ ରହିଛ ।" ତାଙ୍କର କଥା ଶୁଣି ଯୁବକଟି ଲଜ୍ଜିତ ହୋଇ ନିଜ ଭୁଲ ସ୍ୱୀକାର କରି କ୍ଷମାମାଗିଲା ।

କଲିକତାନିବାସୀ ଆନନ୍ଦ ଚନ୍ଦ୍ର ଶାସ୍ତ୍ରୀ ଜଣେ ବିଶିଷ୍ଟ ପଣ୍ଡିତ ଓ ଧନବାନ୍ ବ୍ୟକ୍ତି ଥିଲେ । ଦିନେ ସେ ବଡ଼ବଜାରରୁ ଚିତ୍ପୁର ଅଞ୍ଚଳକୁ ଯାଉ ଯାଉ ଦେଖିଲେ ଯେ ଗୋଟିଏ ଦରିଦ୍ର ବସ୍ତିରେ ସବାରି-ବାହକ ପ୍ରଭୃତି ଶ୍ରମଜୀବୀମାନଙ୍କ ସହିତ ଗୋଟିଏ ସଉପ ଉପରେ ଏକାସନରେ ବସି ରାମମୋହନ ଆଳାପ ଆଲୋଚନା କରୁଛନ୍ତି । ଶାସ୍ତ୍ରୀ ମହାଶୟଙ୍କ ଆଖିକୁ ଏହା ନିତାନ୍ତ ଅସୁନ୍ଦର ଓ ଅବାଞ୍ଛନୀୟ ଦିଶିଲା । ପରଦିନ ରାମମୋହନଙ୍କୁ ଭେଟି ସେ ନିଜ ମନୋଭାବ ଜଣାଇବାରୁ ରାମମୋହନ ଦୃଢ଼ସ୍ୱରରେ ଉତ୍ତର କଲେ—"ଗରିବ ଓ ଅଶିକ୍ଷିତ ହେଲେ ବୋଲି ସେମାନେ କଣ ମଣିଷ ନୁହନ୍ତି ? ଗୁଣ, କର୍ମ ଅନୁସାରେ ସେମାନେ ଶୂଦ୍ରବୃତ୍ତି ଅର୍ଥାତ୍ ଶାରୀରିକ ଶ୍ରମଦ୍ୱାରା ଜୀବିକା ଅର୍ଜନ କରୁଛନ୍ତି । ମାତ୍ର ତା ଯୋଗୁଁ ସେମାନଙ୍କୁ ଅମନୁଷ୍ୟ ବା ଅସ୍ପୃଶ୍ୟ ବିଚାରିବା ସପକ୍ଷରେ ଆପଣ କୌଣସି ଶାସ୍ତ୍ରସମ୍ମତ ଯୁକ୍ତି ଦେଖାଇ ପାରିବେ କି ? ରାମମୋହନଙ୍କ ବଳିଷ୍ଠ ଯୁକ୍ତି ଆଗରେ ପରାଭବ ସ୍ୱୀକାର କରି ଶାସ୍ତ୍ରୀ ମହାଶୟ ଲଜ୍ଜିତ ହୋଇ ନିଜର ବିକୃତ ମନୋଭାବ ପରିତ୍ୟାଗ କଲେ ।

## ରାମମୋହନ-ବିଚାର

ଭାରତର ଗୋଟିଏ ବଡ଼ ଦୁର୍ଭାଗ୍ୟ ଯେ ଏ ଦେଶରେ ଜନ୍ମଗ୍ରହଣ କରିଥିବା ବହୁ ବିଶିଷ୍ଟ ବ୍ୟକ୍ତିଙ୍କୁ ସେମାନଙ୍କର ତିରୋଧାନ ପରେ, ଏପରିକି କେତେକ କ୍ଷେତ୍ରରେ ସେମାନଙ୍କ

ଜୀବଦ୍ଦଶାରେ ମଧ୍ୟ, ଯଥାଯଥ ରୂପେ ଚର୍ଚ୍ଚିତ କରାଯାଇନାହିଁ । ଅନ୍ଧ ଭକ୍ତିରେ ଅତିଶୟୋକ୍ତି ଏବଂ ବିଦ୍ୱେଷ ଓ ହୀନମନ୍ୟତା ପ୍ରସୂତ ଅନ୍ୟକୁ ହେୟ ପ୍ରତିପନ୍ନ କରିବାର ଅପପ୍ରୟାସ ଏଥି ନିମନ୍ତେ ଦାୟୀ । ରାମମୋହନଙ୍କ ଜୀବନରେ ଏହା ଜ୍ୱଳନ୍ତ ଭାବରେ ପ୍ରକାଶପାଇଛି ।

ପୂର୍ବରୁ ଏକାଧିକବାର ବର୍ଣ୍ଣନା କରାଯାଇଛି ଯେ, ରାମମୋହନ ହିନ୍ଦୁଧର୍ମ ଓ ସଂସ୍କୃତିର ସୁରକ୍ଷା, ସମ୍ମାର୍ଜନା ଓ ପୁନରୁଦ୍ଧାର ଲାଗି ଏବଂ ଭାରତଭୂମିରେ ଦ୍ରୁତ ବେଗରେ ପ୍ରସାରିତ ହେଉଥିବା ଖ୍ରୀଷ୍ଟାନ ଧର୍ମାନ୍ତରକରଣର ପ୍ରତିରୋଧ ଲାଗି ଜୀବନ ସାରା କଠୋର ସଂଗ୍ରାମ ଚଳାଇ ହିନ୍ଦୁଧର୍ମ ଓ ସଂସ୍କୃତିକୁ ସ୍ୱ-ମହିମାରେ ବହୁ ପରିମାଣରେ ପୁନଃପ୍ରତିଷ୍ଠିତ କରାଇଥିଲେ । ଏହି ମହତ୍ ଉଦ୍ୟମର ପୁରସ୍କାର ରୂପେ ତତ୍କାଳୀନ ହିନ୍ଦୁ ସମାଜପତିମାନଙ୍କ ଦ୍ୱାରା କେତେଦୂର ନିନ୍ଦିତ ଓ ନିଗୃହୀତ ହୋଇଥିଲେ, ସେ ବିଷୟ ମୋଟାମୋଟି ବିବୃତ ହୋଇସାରିଛି । ଭାରତବାସୀଙ୍କ ସର୍ବାଙ୍ଗୀଣ ମଙ୍ଗଳ ଲାଗି ରାମମୋହନ ସେଦିନ ଯେଉଁ ମାର୍ଗ ପ୍ରଦର୍ଶନ କରିଥିଲେ, ତାଙ୍କ ଦେହାନ୍ତର ଦେଢ଼ଶହ ବର୍ଷ ପରେ, ସ୍ୱାଧୀନ ଭାରତରେ ସେହି ପନ୍ଥାହିଁ ଆଜି ସର୍ବଶ୍ରେଷ୍ଠ ବୋଲି ସ୍ୱୀକୃତ ହୋଇଛି ।

ମାତ୍ର ଅଧିକତର ଦୁର୍ଭାଗ୍ୟର ବିଷୟ ଯେ, 'ବେଦାନ୍ତ ପ୍ରତିପାଦ୍ୟ ଧର୍ମ'ର ପ୍ରସାର ଲାଗି ଏବଂ ସେହି ବିଶ୍ୱଜନୀନ ଆଦର୍ଶର

ଭିତ୍ତିରେ ସବୁ ସଂପ୍ରଦାୟଭୁକ୍ତ ବ୍ୟକ୍ତିଙ୍କ ମିଳନଭୂମି ହେବାଲାଗି ରାମମୋହନ ଯେଉଁ ବ୍ରାହ୍ମସମାଜର ମୂଳଦୁଆ ପକାଇଥିଲେ, ତାଙ୍କର ମତାବଲମ୍ବୀ ଓ ଦାୟାଦ ହୋଇଥିବା ବ୍ୟକ୍ତିମାନେ ପରବର୍ତ୍ତୀ ସମୟରେ ନିଜକୁ 'ବ୍ରାହ୍ମ' ବୋଲିଇ ଏବଂ ସରକାରୀ ଓ ବେସରକାରୀ କାଗଜପତ୍ରରେ ନିଜକୁ 'ନୁହେଁ ହିନ୍ଦୁ, ନୁହେଁ ଖ୍ରୀଷ୍ଟାନ, ନୁହେଁ ମୁସଲମାନ' **(Not a Hindu, not a Christian, not a Mahammedan)** ଲେଖି ଏକ ନୂତନ ସଂପ୍ରଦାୟ ସୃଷ୍ଟି ଲାଗି ଉଦ୍ୟତ ହେଲେ । ରାମମୋହନ ଆଜୀବନ ଉପବୀତ ଧାରଣ କରି ନିଜକୁ ହିନ୍ଦୁ ଓ ବ୍ରାହ୍ମଣ ରୂପେ ପରିଚୟ ଦେଇଥିଲେ ଏବଂ ଅଣ୍ଡା, ମାଂସ ପ୍ରଭୃତି ହିନ୍ଦୁ-ଶାସ୍ତ୍ର-ନିଷିଦ୍ଧ କୌଣସି ପଦାର୍ଥ ଆହାର କରୁ ନଥିଲେ । ସାକାର ସାଧନାକୁ ରାମମୋହନ କେଉଁଠି ହେଲେ ଅସ୍ୱୀକାର କରିନାହାନ୍ତି । ସେ କହୁଥିଲେ, ଏହା ସର୍ବନିମ୍ନ ସ୍ତରର ସାଧନା । ସାଧନ-ମାର୍ଗର ଉନ୍ନତତର ସୋପାନରେ ଦେଶବାସୀଙ୍କୁ ଉପନୀତ କରାଇବାହିଁ ତାଙ୍କର ଉଦ୍ଦେଶ୍ୟ ଥିଲା ।

ଅବଶ୍ୟ ରାମମୋହନଙ୍କର ପ୍ରଶିଷ୍ୟ ମହର୍ଷି ଦେବେନ୍ଦ୍ରନାଥ ଠାକୁର ଓ ତାଙ୍କର କେତେକ ଘନିଷ୍ଠ ସହଯୋଗୀ ଏବଂ ମହର୍ଷିଙ୍କ ପୁତ୍ର ବିଶ୍ୱକବି ରବୀନ୍ଦ୍ରନାଥ ପ୍ରମୁଖ ଏଇ ଉଗ୍ର, ଅତି-ପ୍ରଚେତକାମୀ ବ୍ୟକ୍ତିମାନଙ୍କ ପରି ନିଜର ଉପବୀତ ଫିଙ୍ଗିଦେବା ବା ନିଜକୁ ଅଣ-ହିନ୍ଦୁ ବୋଲିଇବା ପ୍ରଭୃତି ହଠକାରିତା ନକରି, ହିନ୍ଦୁ ସମାଜର ଅନ୍ତର୍ଭୁକ୍ତ ଥାଇ ଏବଂ ସମସ୍ତ ଶାସ୍ତ୍ର ସମ୍ମତ ଆଚରଣ ଓ ପ୍ରଥାକୁ ସ୍ୱୀକାର କରି, ହିନ୍ଦୁଧର୍ମକୁ ଅଜ୍ଞତା ଓ କୁସଂସ୍କାର କବଳରୁ ମୁକ୍ତ ରଖିବାର ଚେଷ୍ଟା କରିଛନ୍ତି । ରବୀନ୍ଦ୍ରନାଥଙ୍କର ବିଶ୍ୱ-ମାନବିକତା ସର୍ବଜନବିଦିତ । ପ୍ରଣିଧାନଯୋଗ୍ୟ ଯେ, ୧୯୩୧

ଜନଗଣନା ସମୟରେ ସେ ତାଙ୍କ ବିବରଣୀ ସିଟ୍‌ର 'ଧର୍ମ' ସ୍ତମ୍ଭରେ ଲେଖିଥିଲେ 'ହିନ୍ଦୁ (ବ୍ରାହ୍ମସମାଜୀ)' । ସାରକଥା, କୌଣସି ନୂତନ ଧର୍ମ ବା ସମ୍ପ୍ରଦାୟ ପ୍ରତିଷ୍ଠା ରାମମୋହନଙ୍କ କଳ୍ପନା-ବହିର୍ଭୂତ ଥିଲା । ହିନ୍ଦୁ ଆଧ୍ୟାତ୍ମିକତାର ଆଦର୍ଶ 'ଯେତେ ମତ, ସେତେ ପଥ' ଏବଂ 'ଉଦାର ଚରିତାନାଂ ତୁ ବସୁଧୈବ କୁଟୁମ୍ବକମ୍'କୁ ନିଜର ସମସ୍ତ ଉଦ୍ୟମରେ ପ୍ରତିଫଳିତ କରିବାକୁ ଚାହିଁଥିଲେ । ଏ ଯୁଗର ଭାରତୀୟମାନଙ୍କୁ ରାମମୋହନ ରାୟ ହିଁ ସର୍ବପ୍ରଥମେ ଦେଖାଇ-ଯାଇଛନ୍ତି ଆତ୍ମବିକାଶର ପ୍ରକୃତ ପନ୍ଥା, ଏବଂ ସେହି ଦୃଷ୍ଟିରୁ ରବୀନ୍ଦ୍ରନାଥ ତାଙ୍କୁ 'ଭାରତପଥିକ' ଆଖ୍ୟା ଦେଇ ନିଜର ଶ୍ରଦ୍ଧା ଓ ସମ୍ମାନ ପ୍ରକାଶ କରିଛନ୍ତି ।

---

